# ପ୍ରଥମ ଅଙ୍କ ।

## ପ୍ରଥମ ଦୃଶ୍ୟ—ବ୍ରଜପଥ ।

(ଯୋଗମାୟା ପୌର୍ଣ୍ଣମାସୀଙ୍କ ପ୍ରବେଶ)

ପୌର୍ଣ୍ଣମାସୀ—(ହସି ହସି ସ୍ୱଗତଃ) ଆଜ ନନ୍ଦନନ୍ଦନ କିଶୋର ଚନ୍ଦ୍ରଙ୍କର ଜନ୍ମଦିନ ସ୍ୱନକ୍ଷତ୍ର ଉତ୍ସବ । ବ୍ରଜେଶ୍ୱର ନନ୍ଦରାଜା ମହାସମ୍ଭ୍ରମରେ ଜନ୍ମ ଉତ୍ସବର ସବୁସମ୍ଭାର ସାଜ ସାରିଲେଣି, ଅଜ ଗୋକୁଳ ନଗରବାସୀଙ୍କର ଆନନ୍ଦର ସୀମା ନାହିଁ । ନନ୍ଦ, ଯଶୋମତୀଙ୍କ ମହାନନ୍ଦକୁ ଏ କହିପାରିବ ? କୃଷ୍ଣ, ବଳରାମ ଉଭୟଙ୍କୁ ମାଜଣାବଧି ବଢ଼ାଇ ଗୁରୁ ସଖାଙ୍କୁ ସଙ୍ଗରେ ଘେନି ମୋଦ ମାନସରେ ମଣି ମୁକ୍ତା ଆସନରେ ବସେଇକଲେଣି । ଦାସୀମାନେ ହୁଳହୁଳି "ଦେଉଛନ୍ତି" ଶଙ୍ଖ, ମହୁରୀ, ଭେରୀ, ତୁରୀ, ଶିଙ୍ଗା, ବଂଶୀ, ଢୋଲ ମୃଦଙ୍ଗ ଓ ମର୍ଦ୍ଦଳ ପ୍ରଭୃତି ନାନାପ୍ରକାର ବାଦ୍ୟ ନାଦରେ ବ୍ରଜ ପାଟଣାଟି ଯାକ ଉଚ୍ଛୁଳି ପଡ଼ୁଛି । ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ, ରମ୍ଭାବୃକ୍ଷ, ନଟିକାଳକ୍ଷାପନ ଚ୍ୟୁତ-ପତ୍ରର ତୋରଣମାନ ଫୁଲହାର ସଙ୍ଗରେ ଧାଡ଼ି ଧାଡ଼ିହୋଇ ଲମ୍ବିଅଛି, ନାନାପ୍ରକାର ପତାକାମାନ ଗୋପନଗରଟିକୁ ମଣ୍ଡିଦେଉଛି, ଆହା ! ଆଜ କି ଆନନ୍ଦର ଦିନ ! ଧନ୍ୟ, ଧନ୍ୟ ! ବ୍ରଜବାସୀଗଣ ! ଯାହାଙ୍କ ସ୍ୱୟଂ କୋଟିବ୍ରହ୍ମାଣ୍ଡ ନାଥ ତୁମ୍ଭମାନଙ୍କର ବଶୀଭୂତ ହୋଇ ମାୟାଖେଳ ଖେଳୁ-ଛନ୍ତି, ଧନ୍ୟ ତୁମ୍ଭମାନଙ୍କ ପୂର୍ବଜନ୍ମର ତପସ୍ୟାହିଁ ଧନ୍ୟ ! ଯାଉଛି, ନନ୍ଦରାଣୀ ମୋତେ ଏହି ଉତ୍ସବ ଉପଲକ୍ଷେ ନିମନ୍ତ୍ରଣ କରିଛନ୍ତି, ଉତ୍ସବଛଳେ ଶ୍ରୀରାଧା କୃଷ୍ଣଙ୍କର ନେତ୍ର ମିଳନ କରାଇ ଅନନ୍ଦ ସିନ୍ଧୁରେ ବୁଡ଼ିବି ଓ ରାଧାର ଅନ୍ତରଙ୍ଗ

ପ୍ରିୟବର୍ଗ ସଖୀମାନଙ୍କୁ ସେହି ଆନନ୍ଦ ସିନ୍ଧୁ କଲ୍ଲୋଳରେ ଭସାଇ ଯମୁନା ସୁଖୀହେବ ।

(ପ୍ରସ୍ଥାନ)

ପଟ୍ଟ ଉତ୍ତୋଳନ ।



## ଦ୍ୱିତୀୟ ଦୃଶ୍ୟ—ନନ୍ଦରାଜାଙ୍କ ଅନ୍ତଃପୁର ।

(ରାଣୀ ଯଶୋମତୀ ଓ ଧନିଷ୍ଠା, କୁନ୍ଦଲତା, ମେଘମାଳାଙ୍କ ଆସୀନ)

ଯଶୋଦା—ମେଘମାଳା ! ତୁ ଟିକଏ ଯାବଟ ଗ୍ରାମକୁ ଯାଇ ମୋ ବଧୂ ଶିରୋମଣି ରାଧାଙ୍କୁ ଡାକିଆଣିଲୁ ଭଲ ? ସେ ଚନ୍ଦ୍ରବଦନା ନବକିଶୋରୀ ଲଳିତା, ବିଶାଖାଦି ସଖିମାନଙ୍କୁ ସଙ୍ଗରେ ଘେନି ଏଠାକୁ ଆସିବାପାଇଁ ମୋର ମାଉସୀ ଜଟିଳାଙ୍କୁ କହିବୁ । ସେ ଅବଶ୍ୟ ରାଧାକୁ ଛାଡ଼ିଦେବେ, ତୁ ଚଞ୍ଚଳ ଯା- -



### ଗୀତ ।

(ରାଗ ପାହିଡ଼ା ଦେହ ଦହଟି ପ୍ରତି ।)

ଯାଅ ଯାଅ ଥରେ ତୁ ଡାକି, ମୋର ବରବଧୂ ବିଧୁମୁହିଁକି
। ପଦ । ଲଳିତାଦି ଥିବେ ସାଥିରେ, ବାଜେ କରି ନନ୍ଦଗଡ଼ରେ
ମନ୍ଦାକ୍ଷବତୀ ତ ମନାର ଅଧର ବନ୍ଦାଇବାକୁ ମୋ ନୀଳ
ମୂର୍ତ୍ତିକି । ୧ ।

ନନ୍ଦାପନା ବଧୂ ସମ୍ଭାର ହେଉଛନ୍ତି ସବୁ ତନ୍ଦୁର
ଗଜଗାମିନୀମାନେ ଯେ ଯାହା ବଧାନେ
ରଞ୍ଜିଲେଣି ସାଜ ମଣ୍ଡିତଙ୍କକୁ । ୨ ।

କହିଦେବୁ ଏ ସ୍ୱପ୍ନ କେତେ, ଚିନ୍ତବେ ଯେଉଁ ବନ୍ଧୁବର ଚିତ୍ତେ
ଆସିଲେ ନାହିଁ କ ନନ୍ଦରାଣୀ
ଯତନ ଦେଲେ ଏପରି ଦେଖେ ନାହିଁକ । ୩ ।

ମୋହନମାଳା—ଦେବେ ମୁଁ ଯାଉଛି ।

ଯଶୋଦା—ହଁ ଯାଅ, ଯେପରି ଅବିଳମ୍ବେ ରାଧା ଆସି ମୋ କଳା-
କାହ୍ନୁଲୁ ବନ୍ଧାପନା କରିବ ।

ମୋହନମାଳା—ଯେଆଜ୍ଞା ।

(ପ୍ରସ୍ଥାନ)

ଯଶୋଦା—କୁନ୍ଦଲତେ ! ବନ୍ଧାପନା ବିଧାନ ସବୁ ଯୋଗାଡ଼
କରିବା ଆସ ।

(ସମସ୍ତଙ୍କ ପ୍ରସ୍ଥାନ)

ପଟକ୍ଷେପନ ।



# ତୃତୀୟ ଦୃଶ୍ୟ—ଶ୍ରୀରାଧାଙ୍କ ବିଳାସ ଭବନ ।

(ଶ୍ରୀରାଧା, ଲଳିତା, ବିଶାଖା ପ୍ରଭୃତଙ୍କ ଆସୀନ ।)

ଶ୍ରୀରାଧା—ସଖି ! ଆଜ ମୋ ବାମଚକ୍ଷୁ କାହିଁକି ଘନ ଘନ ସ୍ପନ୍ଦିତ
ହେଉଛି ?

ଲଳିତା—ରାଧେ ! ସ୍ତ୍ରୀମାନଙ୍କ ବାମଚକ୍ଷୁ ସ୍ଫୁରିଲେ ଶୁଭ, ଆଉ ପୁରୁଷ
ମାନଙ୍କ ଦକ୍ଷିଣ ଚକ୍ଷୁ ସ୍ଫୁରିଲେ ଶୁଭଙ୍କର, ବୋଧହୁଏତ
ଆଜ ତୁମ୍ଭର କୌଣସି ମଙ୍ଗଳ ଘଟଣା ଘଟିବ ।

ବିଶାଖା—ଉଚିତ କହିଛ ଲଳିତେ ! ମୁଁ ଏଥିରୁ ଜାଣିପାରୁଛି ନନ୍ଦ-
ନନ୍ଦନ ଶ୍ରୀକୃଷ୍ଣ ସଙ୍ଗେ ଅଜ ଆମ ପ୍ରେମମଣିଙ୍କର ଶୁଭ
ମିଳନ ହେବ ।

ଶ୍ରୀରାଧା—ବିଶାଖେ ! ଏ କୁରୂପିଣୀର ଏଡ଼େ ଭାଗ୍ୟ କାହିଁ ଯେ ଭୁବନ ମୋହନ ନବନଟବର ଶ୍ୟାମସୁନ୍ଦରଙ୍କ ସାକ୍ଷାତ ପାଇ ପାରିବ ?

ଲଳିତା—କାହିଁକି ? ତମ ପକ୍ଷରେ ଏହା କଅଣ ଅସମ୍ଭବ କି ଘଟେ ? ତେମେ ଯେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ! କୋଟି ବ୍ରହ୍ମାଣ୍ଡ ସୁନ୍ଦରଙ୍କ ସଙ୍ଗେ ମିଳନ ହେବାକୁ ଆଶ୍ଚର୍ଯ୍ୟ କଅଣ ?

(ନେପଥ୍ୟରୁ ମୋହମାଳା ଦାସୀର ପ୍ରବେଶ)

ବିଶାଖା—ସଖି ! ଏହି ଦେଖ ! ଯଶୋଦା ରାଣୀଙ୍କ ଦାସୀ ମୋହମାଳ କାହିଁକି ଏଠାକୁ ଆସୁଅଛି ।

ମୋହମାଳା—(ହସିହସି) ରାଜହଂସଗମନୀ ଗୋ ! ନନ୍ଦନନ୍ଦନଙ୍କ ଉଆସକୁ ଯିବା ଶୁଭରେ ବିଜେକର, ଏଥିଲାଗି ରାଣୀ ଯଶୋମତୀ ମୋତେ ତୁମ୍ଭ ନିକଟକୁ ପେଷିଛନ୍ତି ।

ଗୀତ ।

(ଛୁଡ଼ ଏ ଆଡ଼ମ୍ବରୁ ଷାଢ଼ ତାଳରେ ବୃନ୍ଦେ)

ବିଜେକର ଗୋ ! ରାଜହଂସଗମନ ।

ମୋହେକ ଆଜ ଗହଣରେ ନିଜ ପ୍ରିୟ ସଜନଙ୍କ ସଙ୍ଗରେ ଘେନ । ପଦ ।

ଦେଇ ଖେଳଗେଳମତ, ମୋତେ ନନ୍ଦ ଯୁବତୀ,
ପେଷି ଅଛନ୍ତି ଗୋ !
ପର୍ଣ୍ଣିତା କରିବୁ ଶୋଭା ମଣ୍ଡେ ସେ ପୁର ଅଙ୍ଗନ । ୧ ।
କୁନ୍ଦ ଦଶନା ମୋର, ନନ୍ଦନନ୍ଦନଙ୍କର,
ଜନ୍ମ ଭାଗ୍ୟର ଗୋ ।
ସୁଧାର ଅଧର ଗେଲେ ଚନ୍ଦାଇବୁ ଦୁହିଁ ଘେନ । ୨ ।

ସଜଳ ନୀଳକେଶୀ, ମଣ୍ଡି ମଣ୍ଡନେ ରସି,
ହରଷେ ମିଶି ଗୋ !
ମଞ୍ଜୁଳ ମଙ୍ଗଳ ଗାନ କରିବାରେ ଶୁଭେ ଧନ । ୩ ।
ସତା ଭୂଷୋଦ ପୂର୍ଣ୍ଣ, ଚନ୍ଦନ ସୂନ ଚୂର୍ଣ୍ଣ,
କର ଧାରଣ ଗୋ !
ମଦା ମୋଦ ସୁମଧୁର ମନ୍ମଥର ବରସ୍ତମୀ । ୪ ।

ଶ୍ରୀରାଧା—ମୋଦମାଳା ଗୋ ! ସତେ କଣ ଏ ଅଭାଗିନୀ ପାଶକୁ ବ୍ରଜେଶ୍ୱରୀ ତୋତେ ପଠାଇଛନ୍ତି ?

ମୋଦମାଳା—ହଁ ଗୋ ! କେମନ୍ତଣି କହିଲେମୁଁ କାହିଁକି ଆସିଥାନ୍ତି ? ସଙ୍ଗ ଶୁଭରେ ନନ୍ଦ ଗ୍ରାମକୁ ଚଳ

ଲଳିତା—ତେବେ ଉଠ, ଆଉ ମଠ ମଠ ହେଲେ କି ଲାଭ ?

ଶ୍ରୀରାଧା—ଚାଲ, ସଖି ! (ସମସ୍ତଙ୍କ ପ୍ରସ୍ଥାନ)

ପଟକ୍ଷେପଣ ।



## ଚତୁର୍ଥ ଦୃଶ୍ୟ—ନନ୍ଦରାଜାଙ୍କ ଅନ୍ତଃପୁର ।

(ଦାସୀମାନଙ୍କ ସଙ୍ଗେ ଯେନ ରୋହିଣୀ ଶ୍ରୀକୃଷ୍ଣଙ୍କୁ ବନ୍ଦାଉଥିବା ଓ ଯଶୋଦାରାଣୀ ଦଣ୍ଡାୟମାନ ଥିବା)

ଶ୍ରୀରାଧା—(ସଖିମାନଙ୍କ ସହିତ ଯଶୋଦାଙ୍କ ପଦତଳେ ନମସ୍କାର କରି ଈଷତ ହସି ହସି ଲାଜ ରଖି ଉଭାହେଲେ)

ରୋହିଣୀ—(ସ୍ନେହ ସହିତ ଦୂର୍ବାକ୍ଷତ ଆଣି ଶ୍ରୀରାଧାଙ୍କ ହସ୍ତେ ଦେଲେ)

ଦାସୀଗଣ—(ଅର୍ଦ୍ଧ ପରଦା ପକାଇ ଦେଲେ)

ଶ୍ରୀରାଧା—(ପରଦା ଆଡ଼ରେ ଶ୍ରୀକୃଷ୍ଣଙ୍କୁ ବନ୍ଦାପନା କଲେ)

ଶ୍ରୀରାଧା ବନ୍ଦାପନା କରି ଲେଉଟି ଯିବା ସମୟେ ତାଙ୍କ ମୁଖ-ଅରବନ୍ଦରେ ଶ୍ରୀକୃଷ୍ଣଙ୍କ ନେତ୍ର-ଭୃଙ୍ଗ ମେଳଗଲା)

ଯଶୋଦା—(ଶ୍ରୀରାଧାଙ୍କ ପ୍ରତି ମୃଦୁମଧୁର ବଚନେ କହିଲେ)



## ଗୀତ

(ବସନ୍ତ ଚଉତିଶା ବୃତ୍ତ)

ଧନ ମୋ କଳଙ୍କ ରହିତ ଶାରଦ ଚନ୍ଦ୍ରମା
ଖଣ୍ଡିଲୁ ସକଳ ଦୁଃଖରେ ମୋଧନ ମଣ୍ଡିଦ୍ଦର ସମାରେ ମୋଧନ ।୧।
ମଧୁଲିଟ କେଶୀ ମୋ'ର ବନ୍ଧୁଳି ଅଧର ।
ଏବଧି ବିଧାନ ଯା କରେ ମୋଧନ ସବୁ ତୋର ପରରେ ମୋଧନ ।୨।

ମୁଁ ଯା'ଇ ନ ପାରି ନୂଆ ମୋତିମାଳା ହାତେ ।
ଭୁଲାଇଲି ବୋଲି କେବେରେ ମୋଧନ ନଦେନବୁ ଚିତ୍ତେରେ ମୋଧନ

ଯାଅ ଯାଅରେ ମୋ ବଧୂ ମଧୁର ବଚନା ।
କହିଲି ବୋଲି ଏପରିରେ ମୋଧନ ନକର ଶୋଚନାରେ ମୋଧନ ।୪।

(ରାଣୀ ଯଶୋଦା ବାତ୍ସଲ୍ୟ ଭାବେ ଶ୍ରୀରାଧାଙ୍କୁ ମଧୁର ବଚନ କହିକହି ମେଲଣି ଦିଅନ୍ତେ ଶ୍ରୀରାଧା ନମସ୍କାର କରି ଧୀରେ ଧୀରେ ପ୍ରସ୍ଥାନ କଲେ ।)

(ନନ୍ଦମହଲର ପଛ ପଥ)

ଯବନିକା ।



# ଦ୍ୱିତୀୟ ଅଙ୍କ ।

## ପ୍ରଥମ ଦୃଶ୍ୟ—କୁସୁମିତ ବନପଥ ।

(ଯୋଗମାୟା ପୌର୍ଣ୍ଣମାସୀଙ୍କ ପ୍ରବେଶ)

ପୌର୍ଣ୍ଣମାସୀ—(ସ୍ୱଗତଃ) ରସରାଜ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ସହିତେ ପ୍ରେମମୟୀ ବୃଷଭାନୁ ନନ୍ଦିନୀଙ୍କର ପ୍ରେମବିଳାସ ଘଟାଇବାକୁ ମୁଁ ନିଜେ ଯୋଗମାୟା ଏ ବ୍ରଜରେ ବାସ କରୁଛି, ଇତିମଧ୍ୟରେ ଯୁଗଳମୂର୍ତ୍ତିଙ୍କର କେତେ କେତେ ଲୀଳା ଖେଳା ହେଲାଣି, ଅଞ୍ଜନ ଗଞ୍ଜନ କାନ୍ତି ଶ୍ୟାମସୁନ୍ଦର ଆଜି ରାଧା ପ୍ରେମରେ ମତ୍ତ ହୋଇ ଏକାଏକା ବୃନ୍ଦାବନରେ ଭ୍ରମଣ କରୁଛନ୍ତି, କିନ୍ତୁ ଅସମୟ ହେତୁ ଶ୍ରୀରାଧାର ଦର୍ଶନ ପାଇପାରୁନାହାନ୍ତି, ଏବେ ଯାଉଛି ବ୍ରଜମୋହନଙ୍କୁ ଶବରୀ ବେଶ ଛଳରେ ବର୍ଷାଣ ଗ୍ରାମକୁ ଯିବାର ଆଦେଶ ଦେବି ।

(ପ୍ରସ୍ଥାନ)

ପଟ ପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ—ବୃନ୍ଦାବନ ।

(ବଂଶୀ ବଜାଇ ବଜାଇ ଶ୍ରୀକୃଷ୍ଣଙ୍କ ଭ୍ରମଣ)

ଶ୍ରୀକୃଷ୍ଣ—(ବଂଶୀସ୍ୱନ ବନ୍ଦକରି ସ୍ୱଗତଃ) ରାଧେ ! ରାଧେ ! ସେଦିନ ମୋ ଜନ୍ମ ଉତ୍ସବ ଉପଲକ୍ଷେ ଯାହାଙ୍କ ଶାଢ଼ୀ ପରଦା ନିକଟରେ ଲଦ୍ଧାପନା କରି କ୍ଷଣକ ମଧ୍ୟରେ ଅନ୍ତର ହୋଇଗଲ, ତୁମ୍ଭର ସେହି କଟାକ୍ଷ ଗୃହାଣି ଭୂତକୁନ୍ତି ମେଳୁ ଦମ୍ଭରେ

ବାଜି ଯାଇ ଥିବାରୁ ମର୍ମବ୍ୟଥା ପ୍ରାପ୍ତହୋଇ ଶୟନେ, ସ୍ୱପନେ, ଜାଗରଣେ, ସର୍ବଦା ମନେ ପଡ଼ୁଅଛ । ହେ ରାଧେ ! ଆଜି ଏହି ମୁରଲୀକି ଦୂତୀ କରି ତୁମ୍ଭଙ୍କୁ ଆହ୍ୱାନ କରୁଅଛି, ଚଞ୍ଚଳ ଆସି ଦେଖାଦିଅ ପ୍ରେୟସି !

(ଚକ୍ଷୁଢ଼ୋଳା ଭଳି ହୋଇ ଯୋଗାବେଶ ପୂର୍ବକ ଦଣ୍ଡାୟମାନ)

ପୌର୍ଣ୍ଣମାସୀ—(ନେପଥ୍ୟରୁ ପ୍ରବେଶି ସ୍ୱଗତଃ) ଯାହା ଭାବୁଥିଲି, ତାହାହିଁ ପ୍ରତ୍ୟକ୍ଷରେ ଦେଖିଲି (ପ୍ରକାଶ୍ୟେ) ନୀଳ ମୂରତି ! ଆଜି ତୁମ୍ଭର ଏ ଭାବ କାହିଁକି ?

ଶ୍ରୀକୃଷ୍ଣ—ଭଗବତି ! ମୋର ପ୍ରଣାମ ଗ୍ରହଣ କର (ପ୍ରଣାମ)

ପୌର୍ଣ୍ଣ—ଲୀଳାବିନୋଦ ! ତୁମ୍ଭର ବାଞ୍ଛା ପୂର୍ଣ୍ଣ ହେଉ ।

ଶ୍ରୀକୃଷ୍ଣ—ଦେବି ! ଏହି ଆଶୀର୍ବାଦହିଁ ମୋର ଶିରୋଧାର୍ଯ୍ୟ; କିନ୍ତୁ ସମୟେ ସମୟେ ତୁମ୍ଭ ଆଶୀର୍ବାଦର ବିପରୀତ ଘଟଣା ହୁଏ କାହିଁକି ?

ପୌର୍ଣ୍ଣ—ନୀଳମୂରତି ! ବିପରୀତ ଘଟିବ କାହିଁ ?

ଶ୍ରୀକୃଷ୍ଣ—ତା, ନୁହେ କଅଣ ଆଉ !

ପୌର୍ଣ୍ଣ—କପରି ?

ଶ୍ରୀକୃଷ୍ଣ—ପ୍ରତ୍ୟକ୍ଷରେ ମୋର ଆଜିର ଅବସ୍ଥାରୁ ଅବଶ୍ୟ ଜାଣିପାରୁ ନଥିବ କି ତୁମ୍ଭେ ?

ପୌର୍ଣ୍ଣ—ବନମାଳି ! ଏପରି କହନା, ଉତ୍କଣ୍ଠା ବିରହର ଗୋଟିଏ ପ୍ରଧାନ ଅଙ୍ଗ, ଏ ଭାବ ନ ହେଲେ ପ୍ରେମ ପ୍ରଣୟର ସୁଖନାହିଁ ।

ଶ୍ରୀକୃଷ୍ଣ—ସେସବୁ କଥା ଛାଡ଼, ଏବେ ପ୍ରେମମୟୀ ଶ୍ରୀରାଧାର ଦର୍ଶନ କପରି ପାଇବି, ତାହା କହ ।

ରାଧା—ସଖି ! ଏବେ କପଟ କଥା କହୁଛ ? ମୁଁ ତ ହୃଦୟ ସିଂହାସନରେ ସେହି ନୀଳକାନ୍ତମଣିଙ୍କ ପୂଜାପ୍ରତିମା କରିଛି, ତାହାର ଭେଟ ପାଇଁ ଉଦ୍‌ବେଗମନା ହେବି କାହିଁକି ? କୃଷ୍ଣପ୍ରେମ ପାଇଁ ମୁଁ ତ ସର୍ବଦା କାଙ୍ଗାଳିନୀ; କୃଷ୍ଣ ନାମ ଶୁଣିବାକୁ ମୁଁ ତ ସବୁବେଳେ ବଜ୍ଜୁଣୀ, ସଖିଏ ଗୋ ମୋତେ ସେହି କୃଷ୍ଣନାମର ଗୋଟିଏ ଗାନ ଶୁଣାଇଲ ଭଲ ? କର୍ଣ୍ଣ ଚରିତାର୍ଥ କରେଁ ।

ଲଳିତା—ବିଦଗ୍ଧେ ! ତୁମ୍ଭେ ସିନା କୃଷ୍ଣଗତ ପ୍ରାଣା, ଆମମାନଙ୍କର ସେଭଳି ଶକ୍ତି ନାହିଁ, କୃଷ୍ଣ ନାମର ମାହାତ୍ମ୍ୟ ଆମେ କଣ ବର୍ଣ୍ଣିବୁଁ ରାଧେ ! ତେବେ ତୁମ୍ଭ ଆଦେଶ ପ୍ରତିପାଳନ କରିବାକୁ ବାଧ୍ୟ ନ ହେବୁଁ କି ? ଶୁଣ:—



## ଗୀତ

ଶ୍ରୀକୃଷ୍ଣ କେଶବ କେଶୀନିସୂଦନ ହରି ।
ଜଳାକଳେବର କମନୀୟ କାନ୍ତିଧାରୀ ଗୋ ।
କଳାପୀପୁଚ୍ଛ ଚୂଳିଆ କୌସ୍ତୁଭ ଭୂଷଣ ।
କୁଞ୍ଜ ବିନୋଦିଆ କୃପାନିଧାନ ମୋହନ ଗୋ ।
କଦମ୍ବମୂଳିଆ କଳା କାଇଞ୍ଚ ମାଳିଆ,
କୋଟି ମନ୍ମଥ ମନ୍ମଥ ପୀତ ଦୁକୂଳିଆ ଗୋ ।
କୁଳ ଛଡ଼ା ଘର ବୁଡ଼ା ଟେକଳି କଣ୍ଠରୁକା ।
କମଳିନୀ ବିନୋଦିନୀ ମନ ଉନ୍ମାଦକା ଗୋ ।

ନେପଥ୍ୟରୁ—(ଶ୍ରୀକୃଷ୍ଣ ଖବସ୍ତ୍ରୀ ବେଶେ ପ୍ରବେଶ)



ବାଜ ଯାଇ ଥିବାରୁ ମର୍ମ୍ମବ୍ୟଥା ପ୍ରାପ୍ତହୋଇ ଶୟନେ, ସ୍ୱପନେ, ଜାଗରଣେ, ସର୍ବ୍ବଦା ମନେ ପଡ଼ୁଅଛ । ହେ ରାଧେ ! ଆଜ ଏହି ମୁରଲୀକୁ ଦୂତୀକରି ତୁମ୍ଭଙ୍କୁ ଆହ୍ୱାନ କରୁଅଛି, ଚଞ୍ଚଳ ଆସି ଦେଖାଦିଅ ପ୍ରିୟେ !

(ଚକ୍ଷୁମୋଡ଼ା ହଳାଇ ଭାବାବେଶ ପୂର୍ବ୍ବକ ଦଣ୍ଡାୟମାନ)

ପୌର୍ଣ୍ଣମାସୀ—(ନେପଥ୍ୟରୁ ପ୍ରବେଶି ସ୍ୱଗତଃ) ଯାହା ଭାବୁଥିଲି, ତାହାହିଁ ପ୍ରତ୍ୟକ୍ଷରେ ଦେଖିଲି (ପ୍ରକାଶ୍ୟେ) ନୀଳ ମୂରତ ! ଆଜି ତୁମ୍ଭର ଏ ଭାବ କାହିଁକି ?

ଶ୍ରୀକୃଷ୍ଣ—ଭଗବତି ! ମୋର ପ୍ରଣାମ ଗ୍ରହଣ କର (ପ୍ରଣାମ)

ପୌର୍ଣ୍ଣ—ଲୀଳାବିନୋଦ ! ତୁମ୍ଭର ବାଞ୍ଛା ପୂର୍ଣ୍ଣ ହେଉ ।

ଶ୍ରୀକୃଷ୍ଣ—ଦେବି ! ଏହି ଆଶୀର୍ବ୍ବାଦହିଁ ମୋର ଶିରୋଧାର୍ଯ୍ୟ; କିନ୍ତୁ ସମୟେ ସମୟେ ତୁମ୍ଭ ଆଶୀର୍ବ୍ବାଦର ବିପରୀତ ଘଟଣା ହୁଏ କାହିଁକି ?

ପୌର୍ଣ୍ଣ—ନୀଳମୂରତି ! ବିପରୀତ ଘଟିଲା କଅଣ ?

ଶ୍ରୀକୃଷ୍ଣ—ତା, ନୁହେ କଅଣ ଆଉ !

ପୌର୍ଣ୍ଣ—କପରି ?

ଶ୍ରୀକୃଷ୍ଣ—ପ୍ରତ୍ୟକ୍ଷରେ ମୋର ଆଜିର ଅବସ୍ଥାରୁ ଅବଶ୍ୟ ଜାଣିପାରୁ ନଥିବ କି ତୁମ୍ଭେ ?

ପୌର୍ଣ୍ଣ—ବନମାଳି ! ଏପରି କହନା, ଉତ୍କଣ୍ଠା ହୃଦୟର ଗୋଟିଏ ପ୍ରଧାନ ଅଙ୍ଗ, ଏ ଭାବ ନ ହେଲେ ପ୍ରେମ ପ୍ରଣୟର ସୁଖନାହିଁ ।

ଶ୍ରୀକୃଷ୍ଣ—ସେସବୁ କଥା ଥାଉ, ଏବେ ପ୍ରେମମୟୀ ଶ୍ରୀରାଧାର ଦର୍ଶନ କପରି ପାଇବି, ତାହା କହ ।

ରାଧା—ସଖି ! ଏବେ କାହାର କଥା କହୁଛ ? ମୁଁ ତ ହୃଦୟ ସିଂହାସନରେ ସେହି ନୀଳକାନ୍ତମଣିଙ୍କି ପୂଜାପ୍ରତିମା କରିଛି, ତାହାର ଭେଟ ପାଇଁ ଉଦ୍‌ବେଗମନା ହେବି କାହିଁକି ? କୃଷ୍ଣପ୍ରେମ ପାଇଁ ମୁଁ ତ ସର୍ବଦା କାଙ୍ଗାଳିନୀ; କୃଷ୍ଣ ନାମ ଶୁଣିବାକୁ ମୁଁ ତ ସବୁବେଳେ ରଙ୍ଗିଣୀ, ସଖିଏ ଗୋ ମୋତେ ସେହି କୃଷ୍ଣନାମର ଗୋଟିଏ ଗାନ ଶୁଣାଇଲ ଭଲ ? କର୍ଣ୍ଣ ଚରିତାର୍ଥ କରେଁ ।

ଲଳିତା—ବିଦଗ୍ଧେ ! ତୁମ୍ଭେ ଯିନା କୃଷ୍ଣଗତ ପ୍ରାଣା, ଆମମାନଙ୍କର ସେଭଳି ଶକ୍ତି ନାହିଁ, କୃଷ୍ଣ ନାମର ମାହାତ୍ମ୍ୟ ଆମେ କଣ ବର୍ଣ୍ଣିବୁଁ ରାଧେ ! ତେବେ ତୁମ୍ଭ ଆଦେଶ ପ୍ରତିପାଳନ କରିବାକୁ ବାଧ୍ୟ ନ ହେବୁଁ କି ? ଶୁଣ:—



## ଗୀତ

ଶ୍ରୀକୃଷ୍ଣ କେଶବ କେଶୀ ନିସୂଦନ ହରି ।
ଜଳଦକଳେବର କମନୀୟ କାନ୍ତିଧାରୀ ଗୋ ।

କଳାପୀପୁଚ୍ଛ ଚୂଳିଆ କୌସ୍ତୁଭ ଭୂଷଣ ।
କୁଞ୍ଜ ବିନୋଦିଆ କୃପାନିଧାନ ମୋହନ ଗୋ । ୧

କଦମ୍ବମୂଳିଆ କଳା କାଇଞ୍ଚ ମାଳିଆ,
କୋଟି ମନ୍ମଥ ମନ୍ମଥ ପୀତ ଦୁକୁଳିଆ ଗୋ ।

ଭୂଲ ଛଡ଼ା ଘର ବୁଡ଼ା ଟେକଲି କଞ୍ଚରୁକା ।
କମଳିନୀ ବିନୋଦିନୀ ମନ ଉନ୍ମାଦକା ଗୋ ।

ନେପଥ୍ୟରୁ—(ଶ୍ରୀକୃଷ୍ଣ ଶବରୀ ବେଶେ ପ୍ରବେଶ)



## ଗୀତ

ଆସ ଆସ କଣିକ ପଦ ଏ ସାର୍ଶ୍ୱ ଦ୍ୱାରକୁ ଗୋ । ପଦ ।
ଆଣିଅଛୁ ମୁଁ ଦେଖ,     କେଶ୍ୱ ବସନ୍ତ ପିକ;
କେତେଉଦ୍ଧାନକୁ ଏ ବ୍ରଜନଗରକୁ ଗୋ । ୧ ।

ଗୋଟିଏ ଖଞ୍ଜରୀଟ,     ଏକ୍ଷଣି ହେଲା ଭେଟ;
ମାନ ନୟନ ଶାରଦ ସୁନ୍ଦରଙ୍କୁ ଗୋ । ୨ ।

ପ୍ରକଳରସାଳସୀ,     କଥ କରୁଛ ବସି,
ମଣ୍ଡି ମଣିମୟ ମନ୍ଦିର ପୁରକୁ ଗୋ । ୩ ।

(ଗାନ କର କର ଶ୍ରୀରାଧାଙ୍କ ନିକଟ ହେଲେ ଓ ଆଉ
ଗୋଟିଏ ଗାନ ଛଳେ କହିଲେ)



## ଗୀତ

ରସ ରସିକାରେ ! ରଖ ଏ ସୁନ୍ଦର ସାଖି ! ଘୋଷା !
ଭୁବନ ମୋହନ ନବନୀତ ଚଳୀତି,
ଅବମା ଲଜ୍ଜନାଶିର ସୁନା ମଞ୍ଜୀତି ।

କଦମ୍ବବନେ ବୁଲି, ଆଣିଅଛୁ ମୁଁ କାଳି,
ଶୁକ ପିକ ଖଞ୍ଜନ ତୋର ଖରଧାବୋଲି ।
ମୋ ପରଛ ଲାଗି ଲାଗି, ମାଗିବାରୁ ନ ହେଲି
ଏ ନଗର ସରସ ନାଗ୍ରିଙ୍କି । ୧ ।

ଥିଲା ଭଲ ଶୁକପିକା ଏବେ ମୋ ପାଶେ,
କଣି ପକାଇଲା ଚନ୍ଦ୍ରାବଳୀ ହଇଷେ ।
ଆସୁଥିଲି ମୁଁ ବନ, ନନ୍ଦନନ୍ଦନ ଡାକ,
ଡକାଇଲେ ଦିଅ ମୋତେ, ଏ ଟୋକାକଳ ପକ୍ଷୀ,

ଶୁଣୁଥିବି ଏହାର, ପଞ୍ଚମ ଗାନ ଶୁଣି,
ଯେପି ମୁଁ ଦେଖିଲି ବଂଶୀଧାରୀଙ୍କୁ । ୨ ।

ଅଧରେ ମୁରଲୀ ନବରଙ୍ଗ ରଙ୍ଗିଲା,
କିଷା ବଦନେ ଧନୁଷ୍ଟି ମନୁଷ୍ଟି ଚଳା,
ସଜଣୀଙ୍କ ଅଙ୍ଗରେ, ହସି ମନ୍ଦ ମଧୁରେ
ବିହର ଦରପଣ ଶୋଭର ପାଶରେ,
କି ମାନବରେ ଧନ ! ବସନ୍ତପକ୍ଷୀ କରେ,
ଗେଲାର ଫୁଲ ସୁକୁମାରୀ କି । ୩ ।

ଆଗୋ ଲଲିତା ବିଶାଖା କହିବ ମୋତେ;
କି ନାମ ଏହାର ପୁଣ ବସ୍ଥିତ କେଉଁଠେ ?
ଶ୍ରୀମୁଖକୁ ଦପଟ, ଚନ୍ଦ୍ରମା ହେବ ଲୁଟ,
ଆହା କି ମନୋହର, ଝୁଲି ଲମ୍ବିଟ ପଟ,
ଭଙ୍ଗୀ ଗ୍ରୀବାଣି ଛଟା, କି ଶୋଭନ-ଖଞ୍ଜରୀଟ,
ଲଗାଉ ଅନ୍ତ ପ୍ରୀତି ତୋରଣ । ୪ ।

ଶ୍ରୀରାଧା—(ଖଞ୍ଜଣୀ କଥା ଶୁଣିଲା ମାତ୍ରେ ଅଲକ୍ଷ ଅଲକ୍ଷ ହସି, ଦେହ-ଆଡ଼କୁ ଦର ଦର ଗ୍ରୀବାଣିରେ ବସନ୍ତପକ୍ଷୀଟି ରଖି ଏହି କଥା କହିଲେ ।)



## ଗୀତ

ମତେ କେତେ ଦେଉଛୁ ଏ ଚାଣୀ,
ଶବର ରମଣୀମଣି ନାହିଁ କି ତୁ ଜାଣି ॥ ପଦ ॥

ଜିତେନ୍ଦ୍ରିୟ ତୋ ନୂଆଶୀତ, ନୁହଇ ଭଲ ପ୍ରଶାନ୍ତ,
ଥାଇ କାହା କୁଟମାନ ଘାଣ୍ଟିତା ହେଉଛ ଧ୍ୱନି । ୧ ।

ଏ ମଞ୍ଜୁଳା କାମକଳା, ଲଳିତା ଚମ୍ପକ ମାଳା
କହିଦେବେ ମୋର ନାମ ବେଗେ ଯାଅ ଶୁଣି । ୨ ।

ଏ ଶୁକ ଗାୟିକା ଦୂର, ସତ ମୂଲ ଦଅ କହି,
ଆଉ ଥିଲେ ତୋର ଘରେ ପୁଣି ନେବେ ଦଅ ଆଣି । ୩ ।

ଷବଣୀ — ହେଉ, ଯାଉଛ ମୋ ମୂଲ ଶେଷରେ ଦବ ।

ଶ୍ରୀରାଧା — (ସଖିମାନଙ୍କ ଭୂଲେ ସେହି ଦିଗକୁ ଦୃଷ୍ଟି) (ପ୍ରସ୍ଥାନ)

**ଯବନିକା ପତନ**



## ତୃତୀୟ ଅଙ୍କ ।

### ପ୍ରଥମ ଦୃଶ୍ୟ—ଯାବଟ

( ଶ୍ରୀରାଧା, ଲଳିତା, ବିଶାଖା, ଚମ୍ପକଲତା, ଇନ୍ଦୁରେଖା ପ୍ରଭୃତି ସଖିଗଣ)

ଶ୍ରୀରାଧା — ସଖି ! ଆଜ ସୂର୍ଯ୍ୟପୂଜା ପୂର୍ବରୁ ଭଲ ଭଲ ଫୁଲଗୁଡ଼ିଏ ତୋଳିବା ।

ବିଶାଖା — ହଁଅଁ ଲୋ, ଆଜପରା ବସନ୍ତପଞ୍ଚମୀ, ଫୁଲତୋଳାରେ ଢ ଆନନ୍ଦର ସୀମା ରହିବ ନାହିଁ ।

ଲଳିତା — ସ୍ଥଳ ସ୍ଥଳ ସଖି ! ବ୍ରଜମାଳଣିଙ୍କି ସଙ୍ଗରେ ନେଇ ଫୁଲ-ବନ ଭ୍ରମଣକରିବା ।

ବିଶାଖା — ଆସ, ବନଫୁଲ ତୋଳୁ ତୋଳୁ ଯେପରି ବନଫୁଲ-ମାଳିଆ କାଳିଆଙ୍କ ହାବୁଡ଼େ ନପଡ଼ୁ ।

ଲଳିତା — କାହିଁକି ମ ? ତାଙ୍କ ହାବୁଡ଼େ ପଡ଼ିଗଲେ ହାନି କଅଣ ? ସେତ ଆନନ୍ଦର କଥା !

ବିଶାଖା—ଅହୋ ! ଆନନ୍ଦ ଯେତେକ, ନନ୍ଦନନ୍ଦ ନାଟରୁ ସ୍ବରଗୁଣ ଚଳାଉଛନ୍ତି, ରାଧା ବାଧା ତେତେବେଳେ କିଏଜାଣେ, ଏକା ଏହି ବିଶାଖା ସବୁ ଅନୁଭବ କରେ ।

ଲଳିତା—ବିଶାଖେ ! ତୁମ୍ଭେ ରାଧାଗତପ୍ରାଣା କିନା ? ସେଇତ-ଯେଉଁ ରାଧା ବାଧା ତୁମେହେଲେ ସହିପାର ନାହିଁ । ସଖି ! କହିଲ ଭଲ ? ରାଧା ଦୁଃଖରେ କିଏ ଦୁଃଖୀ ନୁହେଁ ?

ଚମ୍ପକଲତା—ହଇଗୋ ! ମୂଳକୁ ବାଧା ପହଞ୍ଚିଲେ ଡାଳ ପତ୍ରକୁ ସେ ବାଧା ଲାଗେ ନାହିଁ କି ? ରାଧା ଯେ ଆମର ପ୍ରେମକଳ୍ପ-ଲତା, ଆମ୍ଭେମାନେ ଯେ ତାହାର ପତ୍ରଡାଳ ହୋଇଥାଉଁ, ଏପରି ସ୍ଥଳେ ରାଧାଙ୍କ ବାଧା ଆମ୍ଭମାନଙ୍କୁ ଲାଗିବ ନାହିଁତ ଆଉ କାହାକୁ ଲାଗିବ ?

ଚିତ୍ରା—ସଖି ! ଏଥିପାଇଁ ଦୁଃଖିତା ହେବାର ଉଚିତ କି ? କୃଷ୍ଣଚନ୍ଦ୍ରାବଳୀଙ୍କ ଦୁଃଖରେ ଯେପରି ଆମ୍ଭେମାନେ ଦୁଃଖି ତାଙ୍କ ସୁଖରେ ମଧ୍ୟ ଆମ୍ଭେମାନେ ଚରସୁଖି, ସୁଖ ସଙ୍ଗରେ ଦୁଃଖ ସଂଲଗ୍ନ ନଥିଲେ ଏ ସଂସାରରେ ଚଳି ହୁଅନ୍ତା ନାହିଁ । ଯାହାହେଉ ଆମ୍ଭ ଜେମାମଣିଙ୍କ ମନ ଯେଉଁ ନିମନ୍ତେ ଉଚ୍ଚାଟ ହେଉଛି, ଚାଲ ତାହା ପ୍ରତିପାଳନ କରିବା ।

ବିଶାଖା—ସଖି ! ଆସ ଆସ ।



## ଗୀତ

( ରାମକେଶୀ ବୃତ୍ତ )

ଆସ ଗୋ ତରୁଣ ସଙ୍ଗିନୀ ରାଧେ ରାଜକୁମାରୀ ।
ନିଜ ପଣ ତୁମ୍ଭେ କୁସୁମବନେ ବିହାର କର ॥

ଶାରଧା ଚନ୍ଦ୍ରଙ୍କୁ ପଢ଼ିକ ତାହା ହେବ ମୋ ପୂର୍ତ୍ତି ।
ଫୁଲବନ ଶୋଭା ଦର୍ଶନେ ତୋଷ ହୋଇବ ମନ ॥
ଆମ୍ଭେ ସଙ୍ଗସଖୀ ଗନ୍ଧଣେ ଖଞ୍ଜିଥିବୁ ପାଶ୍ୱରେ ।
ଯେ ଯାହା ଟେକା ଉପଚାର ଯୋଗାଇବୁ ହର୍ଷରେ ॥
ସଳମ୍ବ ଜଳଦ ପ୍ରଳମ୍ବକେଶୀ ବିମ୍ବଅଧର ।
କଦମ୍ବ କାନନେ ସଞ୍ଚାର ହୁଅ ରସିକାଧର ॥
(ସଖିଗଣ ଶ୍ରୀରାଧାଙ୍କୁ ମଧ୍ୟରେ ରଖି ଧୀରେ ପ୍ରସ୍ଥାନ)
ପଟ ପରିବର୍ତ୍ତନ ।



## ଦ୍ୱିତୀୟ ଦୃଶ୍ୟ—କଦମ୍ବବନକୁଞ୍ଜ ।

(ଶ୍ରୀକୃଷ୍ଣ, ସୁବଳ, ମଧୁମଙ୍ଗଳ, ଦାମ, ସୁଦାମ, ଶ୍ରୀଦାମ, ବଳରାମ, ସ୍ତୋକକୃଷ୍ଣ, ଅର୍ଜୁନ, କିଙ୍କିଣୀ, ସୁବାହୁ, ବିଶାଳ ପ୍ରଭୃତି ଗୋପାଳମାନେ)

ଶ୍ରୀକୃଷ୍ଣ—(କର୍ଣ୍ଣଡେର ଶୁଣିଲାଗିଥିବା)

ସଖିଗଣ—(ନେପଥ୍ୟରେ ସଙ୍ଗୀତ ଆଳାପ କରୁଥିବା)

ମଧୁ—କିହୋ କାହ୍ନୁ ! କୁଆଡ଼େ କାନଡେରଦେଇ ରହିଛ ଯାଇଛ କି ? ହୁଁ, ହୁଁ, ଜାଣିଲି, ଜାଣିଲି, ତେମେ ଆଚ୍ଛା ଜଣେ ।

ଶ୍ରୀକୃଷ୍ଣ—(ମଧୁମଙ୍ଗଳଙ୍କୁ ନିବର୍ତ୍ତିତ) ସଖେ ! ଆଜ୍ଞା ଗୋଟିଏ କଥା କରିବା ?

ମଧୁ—କଅଣ କରିବା କାହ୍ନୁ !

ଶ୍ରୀକୃଷ୍ଣ— ବନ୍ଧୁଟି ଶୁଣ:—



## ଗୀତ

ହେ ମିତ କହବା ଆଜ ଏ ସବ । ପଦ । ସବୁଦିନେ ମିଳି ରଚି ବନ କେଳି, ପୁରକୁ ଯାଉଥିଲେ ଫେର । ୧ । କେତେଜଣ ଭଦ୍ର ସୁରଭିଙ୍କି ନେଇ ଚରାନ୍ତୁ ଯମୁନା ତୀର । ୨ । ଯାଅ ଫୁଲତୋଳି ଏ ପଟେ ମୁଁ ଗଲି ଯେ ଆଣିବ ସେ ତାହାର । ୩ । ସୁବେଶ ହୋଇବା ହସି ମାତିଯିବା କୁଞ୍ଜ ବଜାରେ ବିହର । ୪ ।

ମଧୁ—କାହ୍ନୁ ! ଠିକ୍ ଏହି ଖେଳଟା ସବୁଠୁଁ ବଢ଼ିଆ ମଜା, ବଢ଼ିଆ ମଜା । ଯାହାଙ୍କ ଆଗରୁ କାଠ ଖଣ୍ଡଟା ପର କାନଡ଼େଇ ରହି ଯାଇଁ·········· ·······ବାଃ ବାଃ ଏଭଳି ରସିକଚନ୍ଦ୍ର ଚୂଡ଼ାମଣି ଯଦି ନ ଥାନ୍ତେ ତେବେ ଫୁଲତୋଳା ହୁଅନ୍ତା କିଆଁ ? ଗୀତ ଗାନ ହୁଅନ୍ତା କିଆଁ ? ତୁମ କାନ ଦୁଇଟା ସେଇଆଡ଼କୁ ଡେରିକରି ରହିଯାଆନ୍ତା କିଆଁ ? ଆଇ ! କାହ୍ନୁ ! ବୁଝିଲି, ବୁଝିଲି, ଏତେଦିନକେ ଭଲ କରି ବୁଝିଲି, ତୁମ୍ଭେ ଜଣେ ଅସଲ ଫଟାରସିକ ହୁଅ ବା ଫୋଟାରସିକ ହୁଅ । ଏହି ଦୁଇ କଥାରୁ କଥାଏ ହେବ ।

ସୁବଳ—ବନ୍ଧୁ ! ତୁମ୍ଭେ ଏତେ ଚଢ଼େଇ ଚଢ଼େଇ କହିବାରେ କି ଲାଭ ? ପ୍ରିୟସଖାଙ୍କ ମନରେ ବେଣି ଗୁଡ଼ାଏ କଷ୍ଟ ଦିଅଇବା ଭଲ ନୁହେ । ଥଣ୍ଡା ପରିହାସ, ଥରେ ଅଧେ ନା, ସବୁବେଳେ ଏମିତ ଦୁର୍ଗୁଣଇ ହୋଇ ଲାଗିଥିବ ? ଦେଖିଲ ଭଲା, କାହ୍ନୁଭାଇ କେମିତ ଲାଜ ହର୍ଷମିଶା ଚନ୍ଦ୍ର ବଦନୁଟିକି ହରସ କରିଦେଇ, ତଳକୁ ଗୃହିଁ ରହିଲେଣି, ଯା, ଯା, ବନ୍ଧୁ ! ଆଉ କିଛି କହନା । ସଖାଙ୍କୁ ଆନନ୍ଦିତ କରଅ ।

ମଧୁ—(ଶ୍ରୀକୃଷ୍ଣଙ୍କ କଟି ଦେଶରେ ଲଉଡ଼ ଲଗାଇ) କହିବା ଦରଦ୍ରସା ବଦନଥା ! ଏ ଗ୍ରହ ପୁଣି କାଇଁକି ଉଦୟ ହେଉଛନ୍ତି ? ବୋଧହୁଏ, ସେଇ ଦଗଲ୍ଲ.....ନୁହେଁ ? ଆଚ୍ଛା ଆସ ଆସ ତୁମ୍ଭେ ଯାହା କହୁଛ ସେହି ଫୁଲତୋଳା ସାର ଖେଳିବା ଆସ । ମାତ୍ର ଜଣ ଜଣ ହୋଇ ଫୁଲ ତୋଳିବା ଯେ କାହାର ଫୁଲ କେହି ଯେପର ନ ତୋଳନ୍ତି ।

ସୁବଳ—ତା ହେଲେ ବାହାଦୁର କଅଣ ଜଣ ମିଳ ?

ଦାମ—ତେବେ ଏତକ ବେଳୁ କହୁଥାଅ, କଏ କେଉଁ ଫୁଲ ତୋଳିବା ।

ମଧୁ—ମଧୁର, ମଧୁର କଥାଟଦକ ଥରେ ଶୁଣିଥା, ଶୁଣିଥା, ମଧୁସୂଦନ ମଧୁ ଲୋଭରେ ଯେପର ମଧୁମାଳତୀ ସୁମନାକୁ ଠାକ ରହୁତ ବୋଧ ହୁଏ ମଧୁମକ୍ଷିକା ପାଇଁ କିଛି ରଖିବ ନାହିଁ ପରା ? ଯାହା ହେଉ ମଧୁକୋଷରେ କେହି ନଥିଁ ଲଟଗଇ ନ ଦେଉ ।

ସୁବଳ—ଦାମଭାଇ ! ତୁମ୍ଭେ ପ୍ରଶ୍ନକଲ କଅଣ, ଉତ୍ତର ପାଇଲ କଅଣ ବୁଝି ପାରୁଚନା ? ଏ ପାଗଳ ବ୍ରାହ୍ମଣ ଟୋକା ମଧୁମଙ୍ଗଳର ସବୁକଥା ଏଇଭଳିଆ । ସଖା ! ସ୍ୱାକଥାକୁ କେହି ହେଲେ ସତ କରବ ନାହିଁଟି ?

ଶ୍ରୀଦାମ—ଆରେ ସୁବଳ । ବ୍ରାହ୍ମଣିଆ ବୁଦ୍ଧି କେତେ ?

ସୁବଳ—ପେଟଟି ପୂର୍ତ୍ତି ହେବାଯାଏ ।

ଶ୍ରୀଦାମ—ତାପର,

ସୁବଳ—ତାପର ଝୁଙ୍କଝାଙ୍କ, ଆଉ କଅଣ ?

ଦାମ—ସୁବଳ ! ଝୁଙ୍କଝାଙ୍କ କଅଣ କହୁଲୁ, କିଛି ବୁଝିପାରୁଲି ନାହିଁ ।

ସୁବଳ—ଏଥି ସାମାନ୍ୟ ଟାସ କଥାଟାକୁ ବୁଝିପାରିଲୁନାହିଁ ଦାମଭାଇ ?

ଦାମ—ନା, ନା, ବୁଝେଇ କହ ।

ସୁବଳ—ଆରେ, ଖାଇସାରିଲେ ଗୋଟାଏ ଘୋର ନିଦ ମାଡ଼ି-ଆସେ ଜାଣିଛୁ ନା ?

ଦାମ—ହଁ ଜାଣିଛୁ ।

ସୁବଳ—ନବୁଝା ପୋଟପାଟକର ଧର ସାରିଲା ଉତ୍ତାରୁ ଗୋଟାଏ ଅଳସ ଗ୍ରୁଡ଼ନାଏ, ହା, ସଙ୍ଗେ ସଙ୍ଗେ ପୁଣି କଣ୍ଟୁ କ୍ଷୁଧା ଉପସ୍ଥିତ ହୋଇ ପଡ଼ନ୍ତି, ସେହି କ୍ଷୁଧା ବେଳକୁ ଏପରି ଚଳିଆନ ହୋଇ ଖାଇନ୍ତି ଯେ ଖାଲି ଭଲଭଲ ଖାଦ୍ୟ ସାମଗ୍ରୀମାନଙ୍କୁ ଲୋଡ଼ିବାକୁ ହୁଏ ବୁଝିଲୁ ? ସ୍ୱାର୍ଥ ଅର୍ଥ ଝୁଙ୍କଖାଙ୍କ । ଏ ପଣ୍ଡାଟୋକା ମଧୁଆର ଗୁଣ ସେତିକି ପର୍ଯ୍ୟନ୍ତେ । ଆମ୍ଭେମାନେ ଉଭ ଉଭ କିଛି ନ କହିବାରୁ ନେଳକୁ ବେଳ ବଢ଼ାଣିଆ ହୋଇ ଗୁଞ୍ଜି ଗୁଞ୍ଜି କଥାକହି ଲାଗିଛୁ । ଆମ୍ଭ ସଖା ଶିରୋମଣି କାହ୍ନୁ ହସ ରହସ୍ୟରେ କିଛି ଉତ୍ତର ନ ଦେଇ ତୁନିହୋଇ ରହିଯାଉଛନ୍ତି ବୋଲି ବଟୁର କୁହାଳିଆ ପଣ ଘର ବଢ଼ିଯାଉଛି ।

ଶ୍ରୀକୃଷ୍ଣ—ସଖେ ! ଏତେ କଳି କଜିଆରେ କି ଲାଭ ? ମୁଁ ଯାହା କହିଲି ତାହା କରିବ କି ନାହିଁ ଭାଇ ?

ମଧୁ—କାହ୍ନୁ ! ମୁଁ ପିନା ଗେଲରେ ତୋ ସଙ୍ଗେ ଟିକିଏ ଟିକିଏ ଲାଗେ, ତୋତେ କଅଣ ମୋ କଥାଟା ଅସୁଖ ବୋଧହୁଏ ? ଏମାନେ ମୋ ସଙ୍ଗେ କଳିକରୁଛନ୍ତି କାହିଁକି ଭାଇ ?

ଶ୍ରୀକୃଷ୍ଣ—ଭାଇ ବଟୁ ! ତୁମ୍ଭଳି ରହସ୍ୟମୟ ଉକ୍ତି ପ୍ରକାଶ କରିବା ହାସ୍ୟକାରୀ ସଖାଟିଏ ମୁଁ କାହିଁ ପାଇବି ? ତୁମ୍ଭ କଥାକୁ ତ'

ମୁଁ କେବେହେଁ ଦୁଃଖ କରେନାହିଁ । ସୁଖ ସମୟରେ ଦୁଃଖ, ଆଉ ଦୁଃଖ ସମୟରେ ସୁଖ ଦେଖାଇବାକୁ ଏକା ମଧୁମଙ୍ଗଳ ନାମକ ସଖାଟି ମୋର । ଯାହାହେଉ ଭାଇ ! ମୁଁ ମାଧବୀ ନକୁଞ୍ଜଠାକୁ ଯାଉଛି, ତୁମ୍ଭେମାନେ ଗୋରୁମାନଙ୍କୁ ଦେଖ ଯା ।

ମଧୁ— ହେଉ ଭଲ ତେବେ ।

(ଏକଦିଗରେ ଶ୍ରୀକୃଷ୍ଣ ଓ ଏକଦିଗରେ ସଖାଗଣ ପ୍ରସ୍ଥାନ)

ପଟପରିବର୍ତ୍ତନ



## ତୃତୀୟ ଦୃଶ୍ୟ— ମାଧବୀ ନିକୁଞ୍ଜ ।

(ଶ୍ରୀକୃଷ୍ଣ ମନେମନେ ହସି ମାଧବୀଲତାତଳେ ଲୁଚିଲେ)

ଶ୍ରୀରାଧା— (କିଛୁକ୍ଷଣପରେ ସଖୀମାନଙ୍କ ସହିତ ପ୍ରବେଶ ପୂର୍ବକ)

### ଗୀତ

ଦେଖଗୋ ସ୍ୱଜନମାନେ, ଆଜି ଏ ନବୀନ ବସନ୍ତ ଦିନେ ଗୋ,
କେଡ଼େ ଆନନ୍ଦ ଜନ୍ମୁଛି ମନେ ସଖିଏ ଗୋ । ୧ ।

ଏ ଫୁଲମାନଙ୍କ ଶୋଭା, ପଲ୍ଲବସହିତେ କେଡ଼େ ଡୋଳିବା ଗୋ,
ଦେଖିଲାରୁ ମନ ହୁଏ କେସା ସଖିଏ ଗୋ । ୨ ।

ଦେଖ ଏ ସୁନ୍ଦର ବଲ୍ଲରୀ, ସୁକୁମାରୀ ଅତୁଳସୁମେ ତରୁ ଗୋ,
ଦୋହଲୁଛି ତ ଡାକଲ ପରି ସଖିଏ ଗୋ । ୩ ।

ଦେଖ ଏ ଚମ୍ପାମଣ୍ଡଳ, କମ୍ପାଇ ଦେଉଛି ମୋ ହୃଦୟସ୍ଥଳଗୋ,
ଯେଣୁ ତାହୃଦେ ବହୁଛି ଶଳ, ସଖିଏ ଗୋ । ୪ ।

(ଏହିସମୟରେ ଗୋଟିଏ ଭ୍ରମରୀ କୁଆଡ଼ୁ ଉଡ଼ଉଡ଼ି ଆସି ଶ୍ରୀର-ଧାଙ୍କ ମୁଖପଦ୍ମରୁ ମଧୁପାନକରିବାକୁ ଉଦ୍‌ଯୋଗୀ ହୁଅନ୍ତେ, ରାଧା ହାସାଞ୍ଚଳରେ ନିବାରିବାକୁ ଲାଗିଲେ)

ଭ୍ରମର—ସେହିପରି ମୁଖନିକଟରେ ଚକ ଭଉଁରୀ ଦେଲା ।

ଶ୍ରୀରାଧା—(ଚେଳାଞ୍ଚଳଦ୍ୱାରା ବାରଣକରି) ଓଃ ଓଃ ଯା ମ ।

ମୋମୁହିଁ ପାଖୁଟାରେ କାହିଁକି ଏମିତ ଝଙ୍କାର
ଲଗଚୁ ? ନିଲ୍ଲଜ୍ଜ ଭ୍ରମର ! ଯା, ଦୂରହୁଅ ।
(ପୁନଶ୍ଚ ଚେଳ ଶେଷରେ ବାରମ୍ବାର ନିବାରିଲେ)

ଭ୍ରମର—(ସେ ଝଂକୃତ ସ୍ୱନସହିତ ଶ୍ରୀକୃଷ୍ଣଅବା-
ମାଧବୀଲତା ନିକଟକୁ ଚେଲ୍‌ଚେଲ୍ ନଅନ୍ତେ)

ଶ୍ରୀରାଧା—(ମନ୍ଦ ମନ୍ଦ ହସି ସଖିଙ୍କି କହିଲେ)ସଖି !
ଏ ଭ୍ରମରଟାର ରୀତି ଗତି କି ଦେଖିଲଣି ଗୋ !
ବନ ମଲ୍ଲୀଫୁଲକୁ ନ ଚୁମ୍ବି ମୋ ମୁଖ ପାଖୁଟାକୁ
କି ଲାଳସାରେ ଆସୁଛି ମ ? ସହି ! ଅନେଇମନ୍ତି ?



## ଗୀତ

ଅନାଥରେ ଅନାଥ ଅନାଥରେ ସହି ! ଏ ଭୃଙ୍ଗର ଗୁଞ୍ଜ !
ମୋ ବଦନ ପାଖେ ଆସେ କି ଲାଳସେ ନ ଚୁମ୍ବି ଏ ବନମଲ୍ଲୀ ।୧।
କାହିଁକି ଏମାରେ ମୁଁ ଜାଣି ନପାରେ କହ କହ ରସବଲ୍ଲୀ ।୨।
ମୋ ଚୁନା ଗୁନ୍ଦରେ ବାନ୍ଧିଦେଲେ ପରେ ନାପଟେ ନ ଏଡ଼େଲ ।୩।
କଗୋ ଏ କଦମ୍ବ ସବୁ ହିଁଇ କମା ଧାଇଁଆସ ମଲମଲ ।୪।

ସଖିଗଣ— କଟଣାଗ୍ରମଣି ଗୋ ! ଥାଉ ଥାଅ ।



## ଗୀତ

ନବକିଶୋରୀମଣି ଅଳିମାଳ ବେଣିରେ ।
ଅକଳଙ୍କ ଚନ୍ଦ୍ରାନନା ମଉପିକବାଣୀରେ ॥ ପଦ ॥

ଆରେମୋ ଘନଜଘନା, ତୋମୁଖ ପଦ୍ମବାସନା,
ଭୃଙ୍ଗକୁଳ ପ୍ରାଣଧେନା, ଭୃଙ୍ଗୀକି ନପାରେ ଜାଣିରେ ।୧।

ସେଧେନରେ ରସାଳସୀ, ହୋଇଛୁ ମଧୁପିପାସୀ,
ପିଇବ ସିନା ଆଶ୍ୱାସି ତୋ ଅଧର ମଧୁଛୁଣି ରେ ।୨।

କାହିଁକି ନବାରୁ ଦରେ, ଶ୍ରୀହସ୍ତ ଠୁନାଗୁ ଦରେ,
ଦେଖିବା ଦେଖିବା ଥରେ, ନେବ କେତେ ଦୂର ଟାଣିରେ ।୩।

କି କରିବ ଏ ଭ୍ରମରୀ, ନଡ଼ର କୁନ୍ଦନ ଗୋରୀ,
ଆମ୍ଭେ ସବୁ ସହଚରୀ ଯାଉଅଛୁଁ ଫୁଲ ଆଣିରେ ।୪।

(ଗୀତ ଗାଇ ଗାଇ ସଖିମାନେ ଚାଲିଗଲେ ।)

ଶ୍ରୀରାଧା—(ଭ୍ରମରୀ ପ୍ରତି) ନିଲଜ, ମୋତେ କାହିଁକି ଏମିତି କଲବଲ କର ମାରୁଚ୍ଛ (ଏହା କହି ପଛକୁ ଦୁଞ୍ଚିଗଲେ)

ଭ୍ରମରୀ—(ବେଳକୁ ବେଳ ଅତିଶୟ ଝଙ୍କାର କଲେ)

ଶ୍ରୀରାଧା—(କୋଟି କନ୍ଦର୍ପ ସୁନ୍ଦର ଶ୍ରୀକୃଷ୍ଣଙ୍କ ଦରହରେ ଅଚେଷ୍ଟ ହୋଇ ପଡ଼ିଲେ)

ଶ୍ରୀକୃଷ୍ଣ—(ଲତା ଅଭ୍ୟନ୍ତରେ ଥାଇ) ରେ କାମକେଳିଶିଖାଳି ! ଏ ନିକୁଞ୍ଜପଟକୁ ଚାଲିଆ ।



## ଗୀତ

ଆଁରେ ମଦନ କେଳି ଖିଆଲିଆ
ତାରେ ଏ ନିକୁଞ୍ଜ ପଥକୁ ଭୁଲିଆ ॥ ପଦ ॥

ତୀବ୍ରପାତଞ୍ଜଳି ବଜାଇ ଛଇଳା
ରଙ୍ଗିଲା ମଦନ ଡ଼ାଳିଆ । ୧ ।

ଖଞ୍ଜି ଟିକେ ଦେଇଛନ୍ତି ସୁନ୍ଦରୀ ବାନ୍ଧି
ଖୋସା ଖୋସି ଆଲ ଦେଲିଆ । ୨ ।

ଖଣ୍ଡ ବାଣୀ ମୋର, ତୋ ଖଣ୍ଡ ମୁକୁର
ଖଣ୍ଡା କେତେ ଝୁଲ ମଲିଆ । ୩ ।

ମୋ ଜୀବନ ସଙ୍ଗୀ, ଦେଖିଲେ ଏ ଭଙ୍ଗୀ
କେ ନୋହିଯିବ ତୋ ମୂଲିଆ । ୪ ।

ଏ ଫୁଲ ପରତେଶ, ମଣ୍ଡି ହସହସେ
ଛକେକର ରଙ୍ଗି ହାଲିଆ । ୫ ।

(ଏହିଗୀତ ଗାଇ ଗାଇ ମୁରୁକ ହସରେ ଶ୍ରୀକୃଷ୍ଣ—ଲତାଭିତରୁ
ବାହାର ପ୍ରନେଷ୍ଟ କହିଲେ )



## ଗୀତ

ଆସ ଆସ ମୋଧନରେ କେଉଁଠାକେ ଗେହା ।
ଥାଉଲା ଦେଖ ଅତନୁ ମୋ ତନୁ ଲୋହା ॥ ପଦ ॥

ଫୁଲ ଆଉ ନ ତୋଳ ଶ୍ରୀକର ତ ମୃଦୁଳ
କଳିବନ ଏ କଣ୍ଟକ-ସଙ୍କଟ-ଗେହା । ୧ ।

ତୋ ବଦନ ଏ ଭଳି; ଦେଖିଲେ ରେ ଛଇଳି
ନବ ବାସବନ ଦେହ ଯାଏ କି ସୁହା ? ୨ ॥

ଅବ ପରା ଚତ୍ତରେ, ଶବରୁଣୀ ବେଶରେ,
ଯିବାଦନ ଜବାଧର ଦେଖିଛୁ ଯାହା ॥ ୩ ॥
ଆଣି ଅଛୁ କୁସୁମ, କରଦେବ ସୁଷମ,
ଥିଲାପର ମୋ କନ୍ଧରେ ତୋ ମନସ୍ପୃହା ॥ ୪ ॥

ଶ୍ରୀରାଧା—(ଶ୍ରୀକୃଷ୍ଣଙ୍କ ଠାରୁ ଏହା ଶୁଣି ବନ କ୍ରୀଡ଼ାରୁ ଉତ୍ସାହ କମାଇ ଦେଲେ ଓ ଲଜ୍ଜାଜଳଧିରେ ବୁଡ଼ିଯାଇ କପଟ ଟଳାଇଯିବା ଉପାୟ ପାଞ୍ଚିଲେ )

ଶ୍ରୀକୃଷ୍ଣ—(ମୃଦୁ ଓ ବନସ୍ୱରେ କହିଲେ ) ପ୍ରିୟେ ! ପ୍ରିୟେ ! ଟିକ ଏ ରହିଯାଅ ସଖି ।

ଶ୍ରୀରାଧା—(ଚଞ୍ଚଳ ଗତିରେ ପଳାଇ ଯାଉଛନ୍ତି, କେଶଗୁଚ୍ଛ ଫିଟି-ଯାଇ ପୃଷ୍ଠରେ ଲୋଟୁଛନ୍ତି, ନଜ ଦେହ ପ୍ରତି ଲକ୍ଷ୍ୟନାହିଁ, ଦୀର୍ଘଶ୍ୱାସ ପ୍ରସର ଯାଉଛନ୍ତି, ଗୃହଆଡ଼କୁ ଇନ୍ଦ୍ରନୀଳମଣିକାନ୍ତି ଦିଶି ଯାଉଛି, ପଛକୁ ଫେର ଫେର ଅନାଇ ପଳାଉଛନ୍ତି ଓ ଛନ ଛନ ମନା ହେଉଛନ୍ତି । ସର୍ବାଙ୍ଗରୁ ଝାଳ ବହିପଡୁଛି, ସଖିମାନଙ୍କ ନିକଟକୁ ଗଲେ )

ଲଳିତା—କି ଗୋ ଜେମାମଣି ! ଇଏ କି ଦଶା ତୋର ? ମନ-ମୋହିନୀ ଗୋ, ଲାଜ ନକର ଉଚିତ କଥା କହ ?



## ଗୀତ

କହ ମୋହନୀରେ, ଲାଜେ ରହନାରେ ॥ ପଦ ॥

ଏ କସରେ କିଶୋର ! ଚେତା ଅଛୁ ପାଶୋର,
ନାହିଁ ପୁରୁବ ଶିରୀ, କାହିଁକି ଏତେଡର । ୧ ।
କୁଟିଳ କେଶ ଫିଟି, ନତମ୍ବେ ଅଛୁ ଲୋଟି,
ଅଙ୍ଗୁ ଅଛୁ ତନୁଟି, ମୋ ଜୀବ ଜୀବନଟି । ୨ ।

ବରଜ ଫୁଲ ତୋଳା,   କି ଦେଖିଲୁ କି ବାଳା,
ଅତି ଚଞ୍ଚଳ ଲୀଳା,   ଶୁଣୁ ନାହିଁ ତୋ ଡୋଳା । ୩ ।

ଶ୍ରୀରାଧା—ସଖି ! ଯାହା ପଚାରିଲ କହୁଛି ଶୁଣ :—



## ଗୀତ ।

( ମୁଁ )   ଗଲସର ଗୋ, ଶୁଣ ସବୁ ନାଗରୀ ।
ଆଜି ମନେ ଯାହା କଲା ଭ୍ରମରୀ ଗୋ ॥ ପଦ ॥

ମିଛ ନୁହେ ମୋହନ ସତେ,   ଫଟଧୂଆଁ ଦେଇ ମୁଁ କେତେ
ଅଟକୁ ଅଟକୁ ନପ ନକଟକୁ
ମାରିନେଇ ଧୃତ ଦେଲାକି ସାର ଗୋ । ୧ ।

କି ଗୋ କାହିଁ ଆସିଲି ବୋଲି,   ବଗୁର ମୁଁ ଅନାଇଁ ଦେଲି
ପଞ୍ଚତରୁ ତଳେ ଜଣେ ହସିଗଲେ
ମଞ୍ଚତଳେ ପଞ୍ଚବାଣ ମାଧୁରୀ ଗୋ । ୨ ।

କଟାକ୍ଷର କି ଭଙ୍ଗୀ ଛଟା,   କୁଳବତୀ ମରମ ଫାଟା,
ଖେଳୁଥିଲା ଇନ୍ଦ୍ରଜାଲ ପରି ଚନ୍ଦ୍ର
ମୁଖମଣ୍ଡଳର କାନ୍ତି ଲହରୀ ଗୋ । ୩ ।

ମତେ ଦେଖି ସେ ଯେତେବେଳେ,   ହସହସେ ପାଶେ ମଣ୍ଡିଲେ,
ଅସମ୍ଭାଳେ ଧାଇଁ ଆସିଲିରେ ସହି !
କହିବା ପ୍ରସଙ୍ଗ ନୁହେ ଆତୁର ଗୋ । ୪ ।

ଲଳିତା—ରାଧେ ଗୋ ! ଆଉ ଏ ନିକୁଞ୍ଜ ବନରେ ଗଲି ଗଲି ବୁଲି ଖେଳା କରନା । ଶ୍ୟାମ ଦେବତା ବିଷମ ଟି, ଲାଗିଲେ ଆଉ ନ ଛାଡ଼େ ।

## ଗୀତ ।

ଆଉ ଖେଳନା ଗୋ, ଏ ନିକୁଞ୍ଜେ ଗଳି ଗଳି
ମରକତ ନୀଳକୁନ୍ତଳାଙ୍କ ଚୂଳ ଭରମ ରମ୍ୟ ନଆଳୀ
( ଘୋଷା )

ଠକିଆ ଶ୍ୟାମ, ଦେବତା ବିଷମ,
ଏ ବନରେ କରଇ କେଳି ।
ଥାଉ ଫୁଲ ତୋଳା, କୁତୂହଳ ଲୀଳା
ଦାଉ ସିନା ଯିବ ଚଳି । ୧ ।

ଏକା ଏହିପରି, କରେ ମୋ କଟଶାସ୍ତି,
ଆହୁରି ଅଛି କଥାଏ ।
କୁଳ ବଦନାଙ୍କୁ କି ଅବା କହିବି,
ସୁନ୍ଦର ଘେଣ ନଥାଏ ॥ ୨ ॥

ଜଣାନାହିଁ ପର, ତାର ଆଚରଣ,
ଶୁଣାଇଁ ଦେଏ କିସଟି ।
ହୁଡ଼ିଦେଇ ଜାତ, କୁଳ କଳାବତୀ,
ବୁଡ଼ ଗଲେଣି ଦଶୋଟି ॥ ୩ ॥

ମୁଲକ ବୁଡ଼ିବା, ଝଲକ ଚନ୍ଦ୍ରିକୁ,
ଉନ୍ମାଦ ଅଛୁ ତ ଗୋର,
ନୋହେ ସହାବଟା, ଏଣୁ ମୋପ ଚୋଟା
ଲଟାକୁ କାଏ ଓଟାର ॥ ୪ ॥

ଶ୍ରୀରାଧା—(ଶୁଣି ଶୁଣି ଲଜରେ ଲଜ୍ଜିଯିବାରୁ)

ସଖିଗଣ—( ପରିହାସ ଛଳେ ) ରାଧେ ! ଆମ୍ଭେମାନେ ଜାଣି ପାରିଲୁଁଣି ଯେ । କଳଶୋଭିମଣି ! ସେ ବିଷମ କାଳିଆ ନାଟକାଲି କାହିଁକି ଗୃହକୋଳ ସତେ ?



ସଖିଗଣ--ଅଗୋ ! ସେ ନଟକୁଟିଆଙ୍କ ପାଖରୁ ବାହାର ଆସ, ବାହାର ଆସ, ଏଠାରୁ ଖସି ପଡ଼ନର ଯିବା, ନଇଲେ ସେ କେତେହଟ କରିବେ ।

ଲଳିତା—ହଁ ଅଁ ଗୋ ! ଚାଲ ଚାଲ ।

ସମସ୍ତେ—(ପଳାଇ ଯାଉଁ ଯାଉଁ ଶ୍ରୀକୃଷ୍ଣ କହିଲେ)



## ଗୀତ ।

ଆସ ଆସ ସହରେ ସୁସରସ କୁଶଳା ।
ବାସବ ମାନ ଲଳିତ କୁନ୍ତଳା । ଘୋଷା ।

ମନେ କେତେ କଥା ମନାସି, ରସିବାକୁ ଅଛି ମୁଁ ଆସି,
ତୁମ୍ଭ ସଙ୍ଗତରେ କଣେ ମୁଁ ଦାସୀ, ନାଶି ନପଳାଅ ଏଜଳଖେଳା ।୧।

ଏଥିପାଇଁ ଏଡ଼େ ବିରସ, ମାରୁ ମାରୁ କଶୋର ଇଶ,
ତୁଇଁ ଛୁ ମାଇ ତା ଶ୍ରୀଅଙ୍ଗ ଦେଷ, ପଗୃର ଦେଖିଛୁ ଏ କାମକଳା ।୨।

ଦୋଷହେଲା ମୋହର ଯେବେ, କ୍ଷମା ହୋଇ ସଖି ଏବେ,
ବଢ଼ାଇ କୁରୁଙ୍ଗ ବୁଢ଼ାଅ ଭବେ, ବେଢ଼ାଇ ଏ ବାହୁ ଚମ୍ପକମାଳା ।୩।

ସଖିଗଣ—(ଶ୍ରୀକୃଷ୍ଣଙ୍କ କଥା ଶୁଣି ଧୀରେ ଧୀରେ ଚାଲି ମଧୁର ବଚନରେ ଏହିପରି କହିଲେ)



## ଗୀତ ।

ଜାଣିଲୁଁ କପଟ ଚାତୁରେ ଶ୍ୟାମ,
ଯୁବତୀ ମତ ମୋହନ କାମ । ଘୋଷା ।

ଚନ୍ଦ୍ରାବଳୀ ସଖି ବୋଲି ସିନା ଗଲୁଁ ଭୁଲି ହେ,
ତେଜି ନପାରି ସେ ପ୍ରେମ । ୧ ।

ଲୁଚିବାକୁ ମନଧାନ କରିଅଛ ପରା ହେ,
କଦମ୍ବ କୁଞ୍ଜ ମୁକାମ । ୨ ।

ତେଡ଼ି ତୁମ୍ଭ ସ୍ନେହରସେ ଏ ବ୍ରଜ ସମ୍ଭବ ହେ,
କେ ନୋହୁବ ଜାତ କାମ । ୩

ଭଲ ବାଛୁ ଦେଇଥିଲେ ନନ୍ଦ ଯଶୋମତୀ ହେ,
ଏ ହଟ ହଟିଆ ନାମ । ୪ ।

(ଏହିପରି ଗାନ କରି କରି ସମସ୍ତେ ପଳାଇଲେ)

ଶ୍ରୀକୃଷ୍ଣ—(ସଖିମାନଙ୍କର ଏହି ଛଳକଥା ଶୁଣି ଝାଉଁଳି ପଡ଼ିଲେ ଓ ଫେରିଯିବାକାଳେ)

ପରଦା ପତନ ।



## ଚତୁର୍ଥ ଅଙ୍କ ।

### ପ୍ରଥମଦୃଶ୍ୟ—କଦମ୍ବ ନିକୁଞ୍ଜ ।

(ଶ୍ରୀକୃଷ୍ଣ ବିରସ ମନରେ ବସି ଶ୍ରୀରାଧାଙ୍କ ରୂପ ଚିନ୍ତାକରୁଥିବା)

### ଗୀତ ।

ଆହା ମୁଁ କି କଲି ଗୁଡ଼ିଦେଲି କିଶୋରୀ କି ।
ଚରଣଧରି ନୋହିଲି ଯା ନିଉଛୁଳିକ ଯେ । ୧ ।

ଏ ଧରାରେ ମୋହଠାରୁ ନାହିଁ କର୍ମହୀନ ।
ସତେ କି ଦେଖିବି ଆଉ ତାରେ ତା ବଦନ ଯେ । ୨ ।

ଘଟାଇବ କି ବିଧି ମିଳନ ସୁଯୋଗ ।
ସଫଳ ହୋଇବ ମୋର ଏ ନିକୁଞ୍ଜ ଭୋଗ ଯେ । ୩ ।

(ଭାବାବେଶରେ ଲହ୍ୱ ଯାଇଛନ୍ତି)

ଲୀଳାନିଧି—(ସଖିମାନଙ୍କ ସଙ୍ଗରୁ ବାଟବଣାହୋଇ ସେହିଠାରେ ପ୍ରବେଶ ହେଲେ)

ଶ୍ରୀକୃଷ୍ଣ—(ଲୀଳାନିଧିଙ୍କ ଦେଖି) ସଖି ଲୀଳାନିଧି ! ଆସ ଆସ ମୁଁ ତୁମ୍ଭର ଅପେକ୍ଷାରେ କେତେବେଳୁଁ ଏଠାରେ ବସିଛି ।



## ଗୀତ ।

ରେ ରସାଳସା ! ଗୁଣ୍ଡାବଗ-ମଣ୍ଡଳ-ଭୂଷା । ଘୋଷା ।

ଜାଣିଥିବୁତ ଗୋପୀ, ନନ୍ଦ ନନ୍ଦ ମୋହନ,
ଏ କୁଞ୍ଜ ପୁଞ୍ଜ ଅଟନ୍ତ ବଶାରେ ।୧।

ବୁଲି ବୁଲି ଆସିଲି, ମୋ ସୁଖେ ବସିଥିଲି,
ବାଧିବ ନାହିଁ ବୋଲି ତୃଷରେ ।୨।

ଏହିକ୍ଷଣି ରେ ସହି, ଜଣେ ଚନ୍ଦ୍ରମାମୁହିଁ
ମଣ୍ଡିଲା ମୋର କୁଞ୍ଜ ରସାରେ ।୩।

ତାହା ଶୋଭା ସମ୍ପତ୍ତି, ଦେଖି ବରଜ ଯୁବତୀ,
ସହିଜଲ ବନସ୍ତୁ ଗ୍ରାସରେ ।୪।

ନ ଶୁଣି ପଳାଇଲା, ଦେଖେ ଦେବଳୁରେ ବାଳା
ମଦନ ଦେଲା କେତେ ଦଶାରେ ।୫।

ନ ରଖିଲେ ଦୟାକୁ, ଆଜ ବ୍ରଜମଣ୍ଡଳକୁ,
ବୁଡ଼ିଲା ଘନଶ୍ୟାମ ଆଶାରେ ।୬।

ଲୀଳାନିଧି—ହେ କାମକଳା ଖେଳ ଶିଆଳଥା କାହା ପ୍ରୀତି ଅଧରଲହ ଭୋଗ କି ଲଗାଉଛ ?



## ଗୀତ ।

କାମକଳା ଖେଳ ଖିଆଲିଆ ନୂଆ ନଟ ହେ !
କୁନ୍ଦନ ବଦନ ପୀତପଟ ହେ ।
କାହା ଚପେ ବୁଡ଼, ଲଗାଉଛ ଲେଉଡ଼,
ଆଣି କାହା ପ୍ରୀତି ଅସ୍ୱଲଟ ହେ । ପଦ ।

କାହୁଁ ଶିଖିଲ ଏ କୁରୁକ, ଶୁଣି ଲଜିଗଲା କି ମଜାକ,
ହେ ରାସ ରସିକ !
ହୋଇଅଛ ପର, କୁଳବତୀ ଝର,
ଶୁଣୁ ଚୁମ୍ବରଙ୍କ ମଧୁଲିଟ ହେ । ୧ ।

ଆସି ଏ ବନରେ ବିହର, ମାରିଦେଲ ନେହ କଟାକ୍ଷ
ହେ ନବ କିଶୋର !
ଖାଶୁଗିରେ ହେଲେ, ଦେଖୁନାହିଁ ଥରେ,
ଯେ ପୁଣି ଯମୁନା-କୂଳ ଘାଟ ହେ । ୨ ।

କଥାପଦେ ବିରହ ବହ୍ନି, ମଥାଟେକି ଯେ ବୋଲୁନାହିଁ,
ସେ ଚନ୍ଦ୍ରମାମୁହିଁ ।
ମୋର ବୋଲ ଶୁଣି ମଣ୍ଡନ ସେ ପୁଣି,
କଦମ୍ବ ନିକୁଞ୍ଜ ଫୁଲଖଟ ହେ । ୩ ।

ଯଶୋବତୀ ଦୁଃଖପାଶୋର, ଗୁଡ଼ ଗୁଡ଼ ଏହୁ ଚାପର
ହେ ମୁରଲୀଧର !
କଂସ ନରବର, ଶୁଣିଲେ ଖବର,
କରିଦେବ ଗିରି ଗୁହାପୁଟ ହେ । ୪ ।

ହେଲା କଥା ହେଲା ମୋ ଧନ ! ବେଗେଯାଅ ନିଜ ସଦନ
ହେ ମହାମଣ୍ଡନ !
ମଦନ ବିକଳେ, ନ ବସାଅ ହେଲେ
ବ୍ରଜପୁରେ ହାଟବାଟ ହାଟ ହେ । ୫ ।

ଶ୍ରୀକୃଷ୍ଣ—(ନେହ ଥନ ଥନ କରି କହିଲେ)



## ଗୀତ

କେଳିରସ ରସିକାବର ! ଦଳି ନଦଅ ମୋର ଧୃତକଟରେ । ପଦ ।

ବଲ୍ଲିଗଲ୍ଲଣି ଦୁଃଖ, ବନ୍ଧୁରେ ଦେଖ ଶୋକ,—
ସିନ୍ଧୁରେ ବୁଡ଼ି ନଡ ନଡ କରେ ।
ଉଜ୍ଜ ଅଛି କେବଳ, କେଳି କଦମ୍ବ ମୂଳ,
ଧୂଳି ଧୂସର ଧରା ତଟକରେ । ୧ ।

ମୋ ମୁଖ ଚୋ ହେରୁରୁ, ସିନାରେ ଗୁରୁଭରୁ
ନଶୁଖା ଆଉ ନଜ ମତକରେ ।
ଢାଳି କୃପା ଅପାଙ୍ଗ, ଢାଳି ଦେ ଏ ପ୍ରସଙ୍ଗ,
କହ୍ନ କୁନ୍ଦ ଲଳିତ ଦନ୍ତୀକରେ । ୨ ।

ଫେରଲ ଯାଏ ରୁହ, ଗୁହଁ ରହନ୍ତି ମୁହଁ,
ତପନେ ଚଳ ଧନୀ କଣ୍ଠକରେ ।
ବଜ ଲଳନାସ୍ତ୍ରୀ, ମଉଳି ଚମ୍ପା ଝୁରି,
ଆସିଲି ପର କର ଗତିକ ଟରେ । ୩ ।

ଏ ଘଟନା ନୋହିଲେ, ଜାଣ ବ୍ରଜମଣ୍ଡଳେ,
କେବଳ ଗତ ମାଲ ହାଞ୍ଜଳରେ !
ନ ସହ୍ନ ସ୍ମରଜ୍ବର, ଖାଇଦେଇ ନହର,
ନିଷ୍ଟୁର ହେବ ପ୍ରାଣ ଘାତକରେ । ୪ ।

ଲଳିତାନଧି—ହେ ନୂଆ ଛଇଳ ! କେଉଁ ଦଣ୍ଡରେ ପଡ଼ଗଲ ?
ଆହା !



## ଗୀତ ।

ନୂଆ ଛଇଳ ହେ ! ପଡ଼ିଗଲ କେଉଁ ଫନ୍ଦେ ।
ହାରିଦେବ ସାର ଏଥର ହେ ସାର ସରସିଜ କାମକାଣ୍ଡେ ॥
( ଘୋଷା )

କଣ୍ଠେଶୋଷ ମଣିଷ୍ଟି;      ଆସିଥିଲ୍ଲ ହଟି,
ସଖୀ ସଙ୍ଗେ ଫୁଲତୋଳି ।
ତା ଶୋଭଲହସି,      ସମ୍ଭାଳି ନପାରି,
ନେଇ ଭେଣେ ଦେଲ ଢ଼ାଳି । ୧ ।

ଆହା ଏ ମୃଦୁଳ,      ତନୁକୁ ଦେଖିଲେ,
ଯାହା ହେଉଅଛି ମନ ।
ଅନବରତରେ;      ଛନ ଛନ ହୋଇ,
ବୁହାଇବ ନେତ୍ରୁଁ ଜଳ । ୨ ।

କୁଳବଣୀ ତ ସେ,      ତୁମ୍ଭ ପ୍ରୀତିରସେ
ତା ମନ ବଳିବ କେଣ୍ଡୁ ।
ଏ ଧନ ବନକୁ,      ବାଳା ରତନକୁ,
କି ବୋଲି ଆଣିବ କହ । ୩ ।

ଯାଉଅଛି ଥରେ      ଏ କୁଞ୍ଜ ମଧ୍ୟରେ,
ମଣ୍ଡି ଥାଅ ଧନ ମୋର ।
ଚଳିବା ସଙ୍ଗତ,      ଆସି ଆଜ ରାତ,
କରିବୁଁ ସବୁ ଗୋଚର । ୪ ।

(ଗାନ ସମ୍ପୂର୍ଣ୍ଣ ଲଳିତାଦି ପ୍ରସ୍ଥାନ ।)

ଶ୍ରୀକୃଷ୍ଣ—(ସେହି ନିକୁଞ୍ଜରେ ରାଧା ଆଶାରେ ରହିଲେ ଓ କିଛି କ୍ଷଣ ଉତ୍ତାରେ ଏହା କହି କହି ଫୁଲ ଗୁଡ଼ିଏ ତୋଳିବାକୁ ଗଲେ)



## ଗୀତ

କେତେ ଦୂରୁଁ ବସିଥିବ ପ୍ରାଣପ୍ରିୟା ପଥ ।
ଯାଉଚ ଏହୁ ନଥାଳୀ ନକୁଞ୍ଜକୁ ମୁଁ ତ ॥
ଚୋଲବ ନାନା ଜାତରେ ସୁବାସ ସୁମନ ।
ଗୁନ୍ଥିବ ଶ୍ରୀମତୀ ପାଇଁ ହାର ସୁଯତନ ॥
ଧନ ମୋର ଅଭିସାର କରିବାରେ କୁଞ୍ଜେ ।
ପ୍ରୀତି ଉପହାର ଦେବ ସେ ହାରଟି ନଜେ ॥
ମାଗି ନେଉଥିବ ଏ ସେବା ସବୁଦିନ ପାଇଁ ।
ଅଙ୍ଗୀକାର କରୁ ବା ନ କରୁ ଶ୍ୟାମମୁହିଁ ॥
ଜନମେ ଜନମେ ମୁଁ ତାହାର ପରିକର ।
ବୋଲି ରଖିଥିବ ପଣ ମନମଧ୍ୟେ ମୋର ॥
ତା ପ୍ରେମ ଧନରେ ରୁଣୀ ତା ସ୍ୱଭେ ଅର୍ଧୀନ ।
ତା ନାମ ଗାୟନେ ରସିଥିବ ନଶୀଦିନ ॥
ସଖିଙ୍କି ବନସ୍ତି ହେବ ଯିବାକୁ ଗହଣେ ।
ସେମାନଙ୍କ ସଙ୍ଗେ ସନେ ଗଣାହେବ ଜଣେ ॥

(ଏହୁପର ଗାଜ କର କର ପ୍ରସ୍ଥାନ)

ପଟପରିବର୍ତ୍ତନ ।



## ଦ୍ୱିତୀୟ ଦୃଶ୍ୟ—ଲଳିତାଙ୍କ କକ୍ଷ ।

(ଲଳିତା, ବିଶାଖା, କୁନ୍ଦଲତା, ଚମ୍ପା, ଚମ୍ପକଲତା ପ୍ରଭୃତି ସଖି-ଗଣଙ୍କ ଆସୀନା)

ଶ୍ୟାମାନନ୍ଦ—(ପ୍ରବେଶ ହୋଇ) କଟେଗା ! ତେମେମାନେ ଏମିତ ଗୋଟିଏ ଗୋଟିଏ ଟିଏ ?

ଲଳିତା—କାହିଁ କମ ? ତୁମପରି ନବରସିକା ତ ଆମେମାନେ ନୋହୁଁ ? ସ୍ତ୍ରୀ କହିବନାହିଁ କିଆଁ ! ଦେଖି ଭଲ କହିଲ କହିଲ, କେଉଁଠି ନୂତ ଉଦୟଗଲ ଫୁଲବନେ ଏତା . ଏତା ! ବିହରିବାକୁ ସତ କହିବଟି ଲୀଳାନିଧି !



## ଗୀତ

ଝୁଟ କହ କହ ନବ ରଙ୍ଗିକାରେ ।
କାହିଁ ଲୁଟଗଲୁ ବନେ ବିହରି ତୁ ଏକା ।ପଦ

ଜାଣି ନାହୁଁ କ ଗୋ ତୁହି, ଫୁଲ ତୋଳୁଥିଲୁ ସହି
ଆଜ ଯାହା କଶୋରୀଙ୍କ କଲ୍ ଭ୍ରମସଖା । ୧ ।
ତହୁଁ ଆସି ଯମୁନାରେ ଖେଳନ୍ତ ପଦ୍ମ ବେଶରେ,
ଶ୍ୟାମ ଆସି ରସିବାର ଲାଗୁଛି ଟାଟକା । ୨ ।
ବନଯାକ ବୁଲି ବୁଲି, ଆସ ଲୀଳାନିଧି ବୋଲି,
ଡାକଲ ତୋ ନାମେ କେତେ ଏ କୁନ୍ଦଲତିକା । ୩ ।
ଫୁଲତୋଳା ଦେଇ ଛାଡ଼ି, ନଟବର ପ୍ରେମେ ପଡ଼ି,
ଆହା ତାହା ସ୍ନେହ ରସ କଲୁ କ ଝାବ୍‌ଜା । ୪ ।

ଲୀଳାନିଧି—ହିଁ କହିବନାହିଁ ନାହିଁ କ ? ହଇଗୋ ତମେମାନେ ସବୁ ଏତେ ଚତୁରୀ ? ମତେ ଏକୁଟିଆ ଛାଡ଼ିଦେଇ ଆପଣା ଆପଣା ସୁଖ ଲୋଡ଼ିଲ, ଉଲଟି ମୋତେ ଦୋଷ ଦେଉଚ ନା ? ହେଉ ହେଉ ଏତିକ ଥାଉ, ଏବେ ଶୁଣିବ ?

କୁନ୍ଦ—କଅଣ କହୁନାହିଁ ତମ କଥା ଟିକିଏ କହ?

ଲୀଳା—ଶୁଣ ଶୁଣ—



ଗୀତ

ଆଗୋ ଦୟାବତ ! ଆଗୋ ଦୟାବତ
ଦେଖି ଦଳ ହୋଇ ଗଲା ମୋର ଧୃତ ଆଗୋ । ପଦ ।
କାହିଁ ଗଲ ସଜନୀଏ ବୋଲି, ଖୋଜି ଖୋଜି ବନେ ଆସୁଥିଲି,
କଦମ୍ବ ନିକୁଞ୍ଜ ମଣ୍ଡି ଥିଲେ ବ୍ରଜ ତରୁଣ ମଣ୍ଡନ ଚକ୍ରବର୍ତ୍ତୀ ।

(୧)

ଦୂରୁଁ ଧାଇଁ ଆସି କଦମ୍ବ ତଳେ, ଦରହାସ ରଖି ଦନ୍ତବାଟେ,
ଦାସପର ହୋଇ ବାଜନ୍ତି ବାନ୍ଧିଲେ ବାସବ ମଣି ମଞ୍ଜୁଳକାନ୍ତି ।

(୨)

ଦଣ୍ଡେ ଯାଏ ଧରି ମୋର କର, ପଗ୍ଭରିଲେ ନବ କଟଣାଗ୍ଭର
ଉଦେଣନନ୍ଦନାମରଦନଠାରୁ ବାହୁଡ଼ିବା ଯାଏ ଦେଦେବସାତ ।

(୩)

ଦୁରନ୍ତ ମଦନ ଶରଧାଟି, ମରମ ଦ୍ରୁମ ହେଲଣି କାଟି,
ଦେଖନ୍ତେ ନାହିଁ ବଳ ବୋଇଲେ କେବଳ ଗୃରୁ ଚନ୍ଦନନା ଏକାଗତ

(୪)

ସଖିଗଣ —ସତେ କିଗୋ । ଲୀଳାନିଧି, ବୃନ୍ଦାବନ ଶଶୀଙ୍କର ଏ ଭଳି ଦୁରବସ୍ଥା ହୋଇ ପଡ଼ିଚି । ଗ୍ଭଲ ଗ୍ଭଲ ଶ୍ରୀରାଧାଙ୍କ ନିକଟକୁ ଯିବା ।

ଲଳିତା —ଆସଗୋ ତ ଝଟ ଆସ ।

(ସମସ୍ତଙ୍କର ପ୍ରସ୍ଥାନ)

ପଟ ପରିବର୍ତ୍ତନ ।



## ତୃତୀୟ ଦୃଶ୍ୟ —ଶ୍ରୀରାଧାଙ୍କ କକ୍ଷ ।

(ଶ୍ରୀରାଧା ଏକାକିନୀ ହୋଇ ବସି ବନ ବିହାର ବିଷୟ ଭାବ ହେଉଥିବା, ସଖିମାନଙ୍କର ପ୍ରବେଶ)

## ଗୀତ ।

ରେ ବନ୍ଧୁଆ ! ମଣ୍ଡି ଚମ୍ପାମାଳି,
( ରୂତ ) ଜଗ ନୟନ ହର୍ଷାଳି ରେ ॥ ପଦ ॥

କି ଫୁଲ ତୋଳିଲୁ କୁଞ୍ଜପଟେ ପଦଗ୍ରଳି ।
ଥୟ ହେଉନାହିଁ ସେ ମୋହନ ଥରେ,—
ନୟନାନ୍ତ ଦେଲ ଢ଼ାଳିରେ ବନ୍ଧୁଆ । ୧ ।
ବସି ବୋଲୁଥିଲେ ପୁଣି ତୋ ଶୋଭାବଳି,
ଆସ ଆସ ରସ ରସିକାନ୍ତି ସ୍ତନେ—
ଲେଖିଦେବ ଚନ୍ଦ୍ରଢ଼ାଳି ରେ ବନ୍ଧୁଆ । ୨ ।
ଦେଖି ଆସିଲି ଗୋ ଲୀଳାନିଧି ନାମାଆଳି ।
ଅତଶସ୍ତେ ରତନାହା ଫୁଲଶରେ,—
ଧୃତ କି ଦେଲଣି ଝାଳରେ ବନ୍ଧୁଆ । ୩ ।
ଥରେଯିବା ଘୁଲ ଶ୍ୟାମସ୍ନେହ ପ୍ରତପାଳି ।
ଆହାମୋର ମାଳବାହା ବୋଲି ପୁନା—
ଦେହା ରୂ ଦଅ ପୋଢ଼ାଳିରେ, ବନ୍ଧୁଆ । ୪ ।

ଶ୍ରୀରାଧା—( ସଖିଙ୍କର ଏକଥା ଶୁଣି ଲଜରେ ଟିକିଏମାତ୍ର ହସି-
ଦେଲେ, ଏଥିରୁ ସମ୍ମତ ଜଣାଗଲା )

ଲୀଳାନିଧି—ଜେମାମଣି ଗୋ ! ତେବେ ବେଶଘରକୁ ଚାଲ
ସୁବେଶ ବଧି ବଢ଼ାଇ ସଙ୍କେତକୁ ବଜେ କରବ ?

ଲଳିତା—ପଚ୍ଛରୁଛ କଅଣମା ? ହାତଧର ନେଇ ଚାଲ;

ଦକ୍ଷିପଣ—(ପଦ୍ମଣ୍ଡ ମଣ୍ଡାଇ ବେଶ ଗୃହକୁ ନେବା ସମୟରେ)

ପରଦା ପତନ ।



## ପଞ୍ଚମ ଅଙ୍କ ।

### ପ୍ରଥମଦୃଶ୍ୟ—କୁସୁମିତ ବନପଥ ।

(ବର୍ତ୍ତମାନେ ପୌର୍ଣ୍ଣମାସୀ ଦଣ୍ଡାୟମାନା)

ପୌର୍ଣ୍ଣମାସୀ—ନନ୍ଦନନ୍ଦନଙ୍କ ନୀଳ ମୂରତିଙ୍କର ଆଜ ପ୍ରେମର ସୀମାନାହିଁ, ଯେଣୁକ ପ୍ରେମମୟୀ, ଆନନ୍ଦମୟୀ, ରସମୟୀ କଶୋରୀକୁଳ ମୁକୁଟମଣି ଶ୍ରୀରାଧାଙ୍କୁ ଘେନ ଲଳିତା ବିଶାଖା ଆଦି ସଖିମାନେ କଦମ୍ବ କୁଞ୍ଜରେ ଶୁଭ ମୁହୂର୍ତ୍ତରେ ଶୁଭମିଳନ କରାଇବେ । ଆହା ! ଏହି ମହା ମନୋହର ଯୁଗଳଠାଣି ଦେଖିବା ଲୋକର କ ସୁଭାଗ୍ୟ ନୁହେ ? ବର୍ତ୍ତମାନ ମୁଁ ଯାଇ ବୃନ୍ଦାକୁ ଆଦେଶ ଦେବି ଯେ ଯେପରି ତରୁଲତା ପଶୁପକ୍ଷୀମାନଙ୍କୁ ସୁନ୍ଦରରୂପେ ବୃନ୍ଦାବନଟି ଯାକ ସଜାଇ ସୁଜେଇ ରଖିଦେଉ । ଯାଏଁ—

(ପ୍ରସ୍ଥାନ)

ପଟ୍ଟପରିବର୍ତ୍ତନ ।



### ଦ୍ୱିତୀୟଦୃଶ୍ୟ—ଯାବଟପ୍ରାନ୍ତପ୍ରଦେଶ ।

(ଅଭିସାରିଣୀ ଶ୍ରୀ ରାଧାଙ୍କୁ ଘେନ ସଖିଗଣ)

#### ଗୀତ ।

ଚଳ ଅଭିସାରେ ନବଜଳଦକୁନ୍ତଳା ଗୋ ।
ନୀପକୁଞ୍ଜେ ଅନୁସରିଥିବେ ନନ୍ଦଲଲା ଗୋ । ପଦ ।
ଲଳ ଲଳ କରୁଁ ଶ୍ୟାମକଣ୍ଠ ରତ୍ନମାଳା ଗୋ ।
ଅଜନମ ସୁକୁମାରି କର ଗଳେ ମାଳା ଗୋ । ୧ ।
ଆଜ ନକୁଞ୍ଜରେ ହେବ ଅପୂରୁବ ଖେଳା ଗୋ ।
ଦେଖ ଦେଖ ଏଣୁକ ସଞ୍ଚାର ଶୁଭବେଳା ଗୋ । ୨ ।

କସ୍ତୁକସ୍ତୁ ବାଣୀ ଶୁକସାରୀଙ୍କ ଉଚ୍ଛୁଳା ଗୋ ।
କେକା କେକା ? ବୋଲି ଡ଼ାକେ ମୟୂରେ ସଙ୍ଗୋଳା ଗୋ ।
ଉଦଲିଆ ପକ୍ଷୀ ଉଡ଼ୁଥାଏ ଦେଖ ଭଲ ଗୋ ।
ଶ୍ୱେତପାରା ଶଙ୍ଖ ଚିଲ ଦେଖ ଭେଳାଭେଳା ଗୋ । ୪ ।

ନକୁଳ ବକୁଳ ମୂଳେ କ ରଙ୍ଗରେ ଗଲ ଗୋ ।
ଶୁଣ ଶମ୍ଭୂଆଳେ କମ୍ବୁ ଶବଦ ଶୁଭିଲ ଗୋ । ୫ ।

ଆସ ଆସ ରସରଙ୍ଗୀ ନ କରନ୍ତି ହେଳା ଗୋ ।
ମରକତ ଅଙ୍ଗେ ହେମ ହେବସିନା ଝଳା ଗୋ । ୬ ।

ନବ ରସବତୀ ନବ ଲାବଣ୍ୟାଙ୍ଗୀ ବାଳା ଗୋ ।
ବନ୍ଧୁଗଣଙ୍କ ହେଉଥାଏ ବାହୁ ଚମ୍ପାମାଳା ଗୋ । ୭ ।

(ପ୍ରବୃଷତି ଶ୍ରୀରାଧାଙ୍କୁ ମନ୍ଦିରେଘେନ ନୃତ୍ୟ ଗୀତସହ ପ୍ରସ୍ଥାନ)
ପଟପରିବର୍ତ୍ତନ ।



## ତୃତୀୟ ଦୃଶ୍ୟ—କଦମ୍ବକୁଞ୍ଜ ।

(ଶ୍ରୀକୃଷ୍ଣ ପଲ୍ଲବ ଶଯ୍ୟାରେ ବସି ଫୁଲହାରଟିଏ ସ୍ୱହସ୍ତରେ ନର୍ମାଣ କରୁଛନ୍ତି ଓ ଗୋଟିଏ ଗୀତ ଗାଉଛନ୍ତି)

### ଗୀତ ।

ଆହାରେ ସୁକୁମାରୀ, ବୃଷଭାନୁ କୁମାରୀ,
କାଞ୍ଚନ ଗୋରୀ ଜବାଧରୀ, ।
ଆହା ମୋ ସୁଖଗିରୀ, ହୃଦ ପଞ୍ଜର ସାରୀ,
କ୍ଷୀଣଉଦରୀ ସୁଚରୁରୀ ରେ,
ଜୀବେଶ୍ୱରୀ, ବାରଣ ଗମନା କଟାକ୍ଷାରୀ,
ପିକବଚନା ପ୍ରେମଭରୀ ।

ଆହା ନବ ନାଗରୀ, ମୋ ଅଙ୍ଗ ତାପହାରୀ,
ହେବୁ ସତେ କୁଞ୍ଜ ସଞ୍ଚାରୀ ରେ ଗୋବର୍ଦ୍ଧନେଶ୍ୱରୀ ! । ୧ ।

ତୋର ଆଶା ପଥକୁ,        ଗୃହେ ମନୋରଥକୁ
ପୂର୍ଣ୍ଣ କରବ ନନ୍ଦ ମୂର୍ତ୍ତି ।
ସତେ କୃପା ନିଧାନୀ,        ତୋ କୃପା ବଶେ ଧନୀ,
ସେବକ ପଦେ ଖଟିବଇଁ ରେ, ରସମୟୀ
ଭେଟାଇବ କି ସତେ ବିଧି,        ମନରେ ପ୍ରତେ ଆସୁନାହିଁ
ସଖିଗଣ ସଙ୍ଗରେ ବନେ କରିବୁ ଥରେ,
ମୋ ବାଧାହରିବାର ପାଇଁ ରେ, ରସମୟୀ । ୨

(ନେପଥ୍ୟରୁ ସଖିଗଣ ଅଭିସାରିଣୀ ରାଧାଙ୍କୁ ଘେନି ଗାନସହ ପ୍ରବେଶ)



## ଗୀତ

ଦେଖ କୁଞ୍ଜେ ବସିଛନ୍ତି ବେଣୁପାଣି, ଆଗୋ ରାଣୀରାଣି !
(ଘୋଷା)

ଅବୃତ୍ତ ଅଳକା ମନୋହର,   ମଣ୍ଡିତ ଶ୍ରୀମୁଖ କଳାକର,
ଶିରେ ଶିଖୀପୁଚ୍ଛ ଧୈର୍ଯ୍ୟକରେ ତୁଚ୍ଛ;
ବେଷ୍ଟିତ ମଲ୍ଲୀ ନଆଳୀ ହାର । ୧ ।

ନାସେ ଗଜମୋତି ଝଲମଲ,   ଗଣ୍ଡେ ଲୁପ୍ତପରି କି ଉଜ୍ଜଳ,
ରତନ କୁଣ୍ଡଳ ଶ୍ରୀଗଣ୍ଡ ମଣ୍ଡଳ ଶୋଭା ବଢ଼ାଉଛି କି ପ୍ରକାର । ୨

ଭଲ ଦେଖେ ଶୋହେ ଗୋରୋଚନା
ଚନ୍ଦନ ପାଟିଟି ସୁରଚନା,
ନନ୍ଦନନ୍ଦନ ଏ ତ୍ରିପୁର ବନ୍ଦନ ଛଇଲ ନବନାଗରଳାଞ୍ଛ । ୩ ।

ଗଳାରେ ଝୁଲୁଛି ମୋତିହାର,
ଏଣାଙ୍କ ନେଇ କାଞ୍ଚ

ବନମାଳା ବୈଜୟନ୍ତୀ ଭୂଷଣିଆ
ମନ ମୋହନ ମୁରଲୀଧର । ୪ ।

ବଳୟ କଙ୍କଣ ଶୋଭେ କରେ,
କ୍ଷୁଦ୍ର ଘଣ୍ଟି ପୀତପଟ୍ଟପରେ,
କାଳେଣୀ ନୂପୁର କାମରସ ପୁର,
ନାଗରୀମନ ଉନମାଦ କରେ । ୫ ।

ଆସ ଆସ ଆସ ରାସେଶ୍ୱରୀ !
ସର୍ବ ରସିକଙ୍କ ମନୋହାରୀ,
ନନ୍ଦନନ୍ଦନ କୁଞ୍ଜୋଦରେ ଧୀରେ ଧୀରେ,
ଆଗୋ କୋଟି ବ୍ରହ୍ମାଣ୍ଡ ଈଶ୍ୱରୀ । ୬ ।

ଲଳିତା ସଖୀ—ନବ ନବ ଆଉ କାହିଁ ପାଇଁ,
ରାଜହଂସ ଗତି ଚନ୍ଦ୍ରମୁହିଁ
ସାଜ ସାଜ ପ୍ରୀତି ଆନନ୍ଦ ସମ୍ପତ୍ତି,
ବୃନ୍ଦାରଣ୍ୟ ଶୋଭା କେମାଦେଇ । ୭ ।

(ଏହା କହିକହି ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କ ନିକଟରେ ସମର୍ପି ଦେଲେ ଓ ଛଳାଇ ଛଳାଇ ହାସରହସ୍ୟରେ ପୁଣ ଏହି ଗୀତରେ କହିଲେ)



## ଗୀତ ।

ଏ ଆମ୍ଭର ପ୍ରିୟସଖି, ଆଜନ୍ମ ସୁଖୀ କିଛି ନ ଜାଣଇ
ହେ କଳାକାହ୍ନୁ ! କହୁଁ ହୋଇ ବିନୟୀ । ୧ ।

ଆଦରେ ଆଦର ନିଅ, ଅଙ୍କ ସିଂହାସନେ ସୁଖେ ବସ
ହେ କଳାକାହ୍ନୁ ! ଆମ୍ଭ ପୁରସ୍କାର ଦିଅ । ୨